# ଶ୍ରୀରାଧାମାଧବଚମ୍ପୂ

ପ୍ରକାଶକ—
ଶ୍ରୀ ବାଉଁରିବନ୍ଧୁ ସାହୁ
ସୋରଡ଼ା



ଲେଖକ—
ଏ. ରାମମୂର୍ତ୍ତି ବେହେରା
ସୋରଡ଼ା (ଗଞ୍ଜାମ)

ଲେଖକଙ୍କ ଦ୍ୱାରା ସର୍ବସ୍ୱତ୍ୱ ସଂରକ୍ଷିତ

ମୂଲ୍ୟ—ଏକଟଙ୍କା ଟ ୧-୦-୦

Digitized by srujanika@gmail.com

## ପଚେମ ଅଚଧ

ଗୃହବର୍ଷ ସ୍ୱସ୍ତଶାଳା । ଉଖ୍ୟାପି(G ଶ୍ରୀରାଧା ମାଧବ ଚମ୍ପୂ” ଆତ୍ମଗୋପନ କରିବା ଚେଷ୍ଟା କରୁଥିଲା । ସୌଭାଗ୍ୟବଶତଃ ହତଭାଗା ଦିନେ ସୋରଡ଼ା ଗ୍ରାମ ନିବାସୀ ସ୍ୱର୍ଗୀୟ କୃଷ୍ଣ ପାଣିଗ୍ରାହୀଙ୍କ ପୁତ୍ର ଶ୍ରୀମାନ୍ ହାଡ଼ୁ ପାଣିଗ୍ରାହୀଙ୍କ ସଙ୍ଗେ ମୁଲାକାତ କରିବା ସୁଯୋଗ ପାଇଲା । ବହୁ ଦିନାବଧି କେତେ ସାହିତ୍ୟାନୁରାଗୀଙ୍କ ସାମନାରେ ନିଜର ଦୁଃଖ ଆବେଦନ ପେଶ୍ କରିଥିଲା ସେ‥‥‥ ଜଣେ କେହି ସୁଦ୍ଧା ସମୁତ୍ସାହିତ କରି କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ହେବାକୁ ନିର୍ଦ୍ଦେଶ ଦେଇନଥିଲେ । କିନ୍ତୁ, କିଏ ଜାଣିଥିଲା ସବଂତ୍ସରର ଦୁଃଖ କ୍ଳେଶ ପାଣିଗ୍ରାହୀ ବାବୁଙ୍କ ଆଶିଷ ସୁଧା ବର୍ଷଣରେ ପ୍ରଶମିତ ହେବ ? × × × ହେଇସ୍ପା ହେଲା !!! ଆଜି ତାଙ୍କର ଅଦମ୍ୟ ଉତ୍ସାହ, ଅର୍ଥ ସାହାଯ୍ୟବଳରେ “ଚମ୍ପୂ” ଆତ୍ମପ୍ରକାଶ କରିବାକୁ ସକ୍ଷମ ହେଲା ।

ସେଥିଯୋଗୁଁ ଲେଖକ ପାଣିଗ୍ରାହୀ ବାବୁଙ୍କୁ ଅନ୍ତରର ଅଭ୍ୟନ୍ତର ପ୍ରଦେଶରୁ କୃତଜ୍ଞତା ଜ୍ଞାପନ କରୁଛି ଏବଂ ଭବିଷ୍ୟତରେ ତାଙ୍କର ନିର୍ଦ୍ଦେଶମତେ କର୍ମକ୍ଷେତ୍ରରେ ଅଗ୍ରସର ହେବାକୁ ସ୍ୱୀକୃତି ପ୍ରଦାନ କରୁଛି ।

ମୋର ଚମ୍ପୂ ବହିଟିର ଆଉ ବଳକା ପାଞ୍ଚ ଶତ କପିର ମୁଦ୍ରଣଭାର ସ୍ୱର୍ଗୀୟ ଘୁକୁଣ୍ଠା ସାହୁଙ୍କ ପୁତ୍ର ଶ୍ରୀମାନ୍ ବାଉରିବନ୍ଧୁ ସାହୁ (ସୋରଡ଼ା) ବହନ କରିଥିବାରୁ

Digitized by srujanika@gmail.com

ଲେଖକ ସାହୁବାବୁଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଅଛି ।

ପ୍ରଶାନ୍ତ କୁଟୀର, ସୋରଡ଼ା
ତା ୧-୮-୧୯୫୧
ଆଷାଢ଼ କୃଷ୍ଣ ଦ୍ୱାଦଶୀ, ରବିବାର

ବିନୀତ
**ଲେଖକ**

---

## ମନକଥା

କବିସୂର୍ଯ୍ୟ ବଳଦେବ ରଥଙ୍କ ବିରଚିତ "କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ" ପାଠ କରି ଦିନେ ମନରେ କୌତୂହଳ ଜାତହେଲା, ସରଳଭାଷାରେ ଅନ୍ୟ ଏକ ଚମ୍ପୂ ରଚନା କରିବାକୁ । କବିମିତ୍ରଙ୍କ କ୍ଷୀଣରଶ୍ମି ଗୁଚ୍ଛ ଏବଂ ମୋର ନଗଣ୍ୟ "ଶ୍ରୀରାଧା ମାଧବ ଚମ୍ପୂ" ଥରେ ଓଡ଼ିଶାର ସଙ୍ଗୀତ କଳା ବିଶାରଦ ଭାଇ ଭଜଣୀଙ୍କ ଲଳିତ କଣ୍ଠରେ ଝଙ୍କାରିତ ହେଲେ ଭାଗ୍ୟବାନ ମନେ କରିବି ।

ବିଶେଷ ଦ୍ରଷ୍ଟବ୍ୟ ଏହି ଯେ—କିଶୋରଚନ୍ଦ୍ରାନନ୍ଦ ଚମ୍ପୂର ରାଗ ତାଳ ଅନୁକ୍ରମରେ 'କ' ଠାରୁ 'କ୍ଷ'ପର୍ଯ୍ୟନ୍ତ ଏହା ଲିଖିତ ।

ସ୍ଥାନ:---ପ୍ରଶାନ୍ତକୁଟୀର,
ସୋରଡ଼ା
ତା ୬-୬-୪୭

ବିନୀତ
**ଲେଖକ**

# ଶ୍ରୀ ରାଧା ମାଧବ ଚମ୍ପୂ



ଶ୍ରୀରାଧା—ଲଳିତେ ! କହ ସେ କଏସେ ? ମସ୍ତକେ ଶିଖିଚୂଳ, ଅଧରେ ମୁରଲୀ, ଗଳାରେ ଗିରିମଲ୍ଲି ମାଳ, ପୀତଚେଳଧାରୀ, ଠାଣି ତ୍ରିଭଙ୍ଗି, ଦୃଷ୍ଟି ସୁନ୍ଦର । ସେ କି କନ୍ଦର୍ପ ? ତେବେ ଯମୁନା-ପୁଳିନ କୁଞ୍ଜବନ ତାଙ୍କର କ୍ରୀଡ଼ାସ୍ଥଳୀ ?

"କେ"

(ରାଗ—ସାବେରୀ । ତାଳ—ତ୍ରିପୁଟା)

(କି ହେଲାରେ—ବୃନ୍ଦେ)

କେ ସେହୁରେ, କଳାପୀ କଳାପ ଚୂଳଆରେ । ୦ ।
କରଷେରୁ ମାତରକେ, କେବେହେଲେ ଅତରକେ
କହିବେ ଥରେ ଯା' ଦେଖିଆରେ । ପଦ ।
କୁଞ୍ଜକାନନେ କୁଞ୍ଜର, କାହ୍ନିଁ ନଥିଲା ଗୋଚର
କବା ସେ କଞ୍ଜନ ରସିଆରେ
କୁସୁମ-ମଧୁ-କାଳର କୁସୁମ-ସାଜ ସୁନ୍ଦର
କୁସୁମେ ସଜଡ଼ା ରଙ୍ଗିଆରେ । ୧ ।
କଳାକର-ମୁଖ କଳା କାଳୀ-ନାଗ-ଦର୍ପଦଳା
କଂସ-କଶ୍ୱବର-ଗଣ୍ଡଆରେ
କୂଠଜ ଗଳେ ଭରିଛି କୂଠକର କେ ପାଳିଛି
କେଶାଶ୍ୱ-ଦରପ-ଦଳଆରେ । ୨ ।

Digitized by srujanika@gmail.com

କଟାକ୍ଷ ଢାଳିଲ ବେଳେ କେଳତ ବାଞ୍ଛିଲି ହେଳେ
କମ୍ପିଲ ମୋ ତନୁ କାଣିଯା'ରେ
କେଉଁଠି ଗୋପନଗରେ କରେ ବାସ ଅଗୋଚରେ
କୁମାର ମୁରଲୀ-ଧାରିଆରେ । ୩ ।
କହ କ ବ୍ରଜ-ବରଜୀ କନ୍ଦର୍ପଧର୍ମ ମାଧବ
କେଶବ ଗୋଧନ ପାଳିଆରେ
କାମକୁଳଶ ପ୍ରହାରୀ କୁସୁମିତ ଯୁବାଶିରୀ
ଟାଳି ଦେଲା ମୀପ-ମୂଳଆରେ । ୪ ।
କରେ ନେଇ ଜୀବନ୍ତୀବ କ ଭଙ୍ଗିରେ, ଜୀବ ଯିବ
କେ ଦେବ ଜୀବନ ଫଗିଆରେ
କହୁଛି ତୋର ପୁରତେ କର ସହୀ ବଧୂମତେ
କଳିବାକୁ ରାମ ରଚିଲାରେ । ୫ ।

---

ଲଳିତା—ସଜନ ! ଜାଣି ବା ନଜାଣି କେଉଁ କଥା କଲୁ ? ଯିଏ ତୋ ନେଇ ପଥରେ ଭେଟହେଲେ, ଜାଣୁ ସେ କଏସେ ? ସେ ପରା ଖଳ ଦଗାଦାର ମୋହନ ? ଯୁବତୀ ମାନ ଇଜ୍ଜତ ଲୁଟ୍ କରିବ ସେ— ।

"ଖ"

(ରାଗ—କେଦାର । ତାଳ—ତ୍ରିପୁଟା)
(ଖବର ତୁ ହେଲୁ ରେ—ବୃତ୍ତ)
ଖିଆଲେ କ କଲୁ ରେ
ଖାଣ୍ଟି କ୍ଷୁଧାର୍ତ୍ତରେ ସୁଧା ବ୍ୟଞ୍ଜନକୁ ଦେଲୁ ରେ ।୦।

Digitized by srujanika@gmail.com

ଖାଇ ବସିଥିବା' ଦ୍ୱାର କରୁ ତୁ ଠାଣିଲୁ ରେ
କ୍ଷୋଭ ବୃକେ ଦେବା ସଞ୍ଚ ଦରଣ' ପାଇଲୁ ରେ । ୧ ।
ଖାସା କଥା କହୁ ଯୋଷା ଯଶକୁ ନାଶିଲୁ ରେ
ଖଳ ଦଗାଦାରେ ସିନା ବିବେକ ବିକଳୁ ରେ । ୨ ।
ଖଟିଥିଲ ପାଶେ ପାଶେ ପଦେ ନ କହିଲ୍ ରେ ।
କ୍ଷୁରଧାରେ ଗଳାକାଟି ଜୀବନେ ବାଞ୍ଛିଲୁ ରେ । ୩ ।
ଖଞ୍ଜିଦେବା ଅନୁରାଗ ବିରାଗ ମଣିଲୁ ରେ ।
ଖଦ୍ୟୋତକ ହୋଇ ହେମ-ଚମ୍ପକେ ଛୋଲିଲୁ ରେ । ୪ ।
ଖଣ୍ଡପର୍ଶୁଧର ସେବି ଶିବ ମନାସିଲୁ ରେ ।
ଖସିଲ୍ ଅଶିବପଦ ରାମନେଣୀ ମଲୁ ରେ । ୫ ।



ଶ୍ରୀରାଧା—ଲଳିତେ ! ମୋର ତ କିଛି ଭୁଲ ହେଲାପରି ମନେ ହେଉ ନାହିଁ । ଅକାରଣରେ ମୋତେ ଏଭଳି କଥା କହି ମୋ ହୃଦୟରେ ବ୍ୟଥା କାହିଁକି ଦେଉଛୁ, ସହି ?

"ଗ"

(ରାଗ—ଚୋଖି ପରଜ । ଆଦିତାଳ)
(ଗଲ୍ଲଣି ତ ଗଲ୍ କଥା—ବୃତ୍ତେ)

ଗୁମାନେ ନହିଅ ବ୍ୟଥା ରେ—ସଙ୍ଗାତ
ଗୁଞ୍ଜରିବା ଅଳି ଏ ଫୁଲେ ସେ ଫୁଲେ
କହେକି ତା ମନକଥା ରେ । ପଦ ।
ଗଉରବ ଏଡ଼ି ପରିଭବ ଲୋଡ଼ି
ପଣ କିଛି କରୁନାହିଁ

Digitized by srujanika@gmail.com

ଗହନ କଦମ୍ବ- କାନନେ କାଦମ୍ବ-
ବଇଶ-ସାନୁଜ ଥାଇ ରେ । ୧ ।
ଗୋ-ରସରେ କାହ୍ନୁଁ ଗରଳ ମିଶିଲ
ଫିଟାଇ ବଶଦ କନ୍ଧ
ଗଣ୍ଡି ଧନ ପଣେ, ରାଢ଼ କଲ ବସି
ହାଟ ନବସାଇ ସନ୍ଧ ରେ । ୨ ।
ଗିରି-ଗୋବର୍ଦ୍ଧନ କରେ ଟେକ ଯେହ୍ନୁ
ବଞ୍ଚାଇଲ ଗୋପପ୍ରାଣ
ଗନ୍ଧସାର ଲେପି ଗନ୍ଧଷିବା ବଧି
ହେବ କେବେ ଅପ୍ରମାଣ ରେ । ୩ ।
ଗୁହାର କରୁଛି ଜୁହାର ଏଣିକ
ମନକଥା ମନେ ମରୁ
ଗୁପତ ବେଦନା ବୁଝ୍ ବୋଲ ସିନା
କହୁଥିଲ ମରୁ ମରୁ ରେ । ୪ ।
ଗପିବା ଭାରତି ନ ନେଇ ଶ୍ରୁତିକ
ନିଷ୍ଠୁର ହୃଦୟା ହେଲୁ
ଗଭସ୍ତି ପୂଜିବା ପାଇଁ ମାତରକ
ସଦା ଠେଲମାର ନେଲୁ ରେ । ୫ ।
ଗ୍ରୀବ କଲ ଗ୍ରୁଡ ବଧୂର ବଧୂର
କରିବା ସାହସ ବାନ୍ଧ
ଗୋକୁଳ ସମ୍ପଦ ଅଭିରାମ ମୂର୍ତ୍ତି
ପଦେ ମନ ଭୃଙ୍ଗୀ ବନ୍ଧୀ ରେ । ୬ ।



Digitized by srujanika@gmail.com

ଲଳିତା—ମନଭ୍ରମର ମରମଘଟିରେ ସାଇତି ରଖିବା
ସାରହେବ ସିନା ସେ କ ସହଜେ ମିଳିବା ଧନ—
କେବଳ ନାମ ତାର ଜପାମାଳ କର ଜପୁଥାଅ, ସଖି !
ଅପବାଦକୁ ଭୟ ଥିଲେ କେବେ ଦେଖା ହେଲେ ମଧ୍ୟ
ନେତ୍ରାନ୍ତରେ ଠାରିବୁ ନାହିଁ । ବଡ଼ ପ୍ରମାଦ ପଡ଼ିବଟି
ରାଧେ ! ମୋ ଭଲକୁହା ମାନ ।

"ଘ"

(ରାଗ—କାମୋଦୀ । ଏକତାଳୀ)

(ଦେଖାଇ ଆମ୍ଭେ ଯେତେ—ବୃତ୍ତେ)

ଘାଣ୍ଟନା ଏଣୀଦୃଶା ରୁଷନା ଗୋ ।
ଘଡ଼ିକ ଦେଖା ଚିହ୍ନା ପକାନା ଗୋ । ୦ ।

ଘଉଡ଼ ଦିଅ ତାକୁ ନୟନ ସାଇତାକୁ
ନେତ୍ରାନ୍ତେ କେବେ ଆଉ ଠାରନା ଗୋ । ପଦ ।

ଘୁଞ୍ଚାଅ ମନଭ୍ରମ, ଧ୍ୱଷମ ଉପୁଜିବ,
ଘୋଷିବା ସାରହେବ ଶ୍ୟାମ ନା' ଗୋ ।

ଘରେ ଘରେ ନିନ୍ଦିବେ, ଅପକୀର୍ତ୍ତି ରଟିବେ,
ଘେନମା ହେଉ ପରଗଞ୍ଜଣା ଗୋ । ୧ ।

ଘଟଣ ହେଲ୍ଲ ଆସି କାମ କୁହୁକ ରତି
ଘୋର ବିରହାନଳ ଜାଳନା ଗୋ ।

ଘାରି ହେବୁଟି ସିନା ଫୁଲ କୋଦଣ୍ଡ କିନା
ଘଟେ କି ପ୍ରାଣ ଥିବ ସୁମନା ଗୋ । ୨ ।

ଘନରସେ ଶୃଙ୍ଗିକ କରିବା ବକଲକ୍ଷ୍ୟ
କରୁଥାଅ ଏଣିକ ଉରନା ଗୋ ।

Digitized by srujanika@gmail.com

ଘୋଷ ହେବ କଣ୍ଠକେ ପଡ଼ିଲୁ ଅଚରକେ
କୁଳଟା ଅନୁରୂପେ ରସନା ଗୋ । ୩ ।
ଘୁଞ୍ଚୁ ତୋ ଅବସାଦ ଏ କିସ ପରମାଦ
ଖୋଲ କହିବ କେହ୍ନେ ଲଳନା ଗୋ ।
ଘଟାଇ ଦେବ ଆଣି ମାନିଲେ ବେଣୁପାଣି
ବିପଶ୍ୱରେ ନକର ଭର୍ତ୍ସନା ଗୋ । ୪ ।
ଘର୍ମେ ଜଡ଼ାଇ ଅଙ୍ଗ ଦଉଡ଼ ତାର ସଙ୍ଗ
-ପାଇ କରିବ ମତ-ମୋହନା ଗୋ ।
ଘୃଣା ପାଞ୍ଚିଲେ ମନେ ନିବେଦିବ ଯତନେ
ରମେ ହେଉ ସୁଦୟା ନି ଯାମା ଗୋ । ୫ ।

(ଲଳିତା ଶ୍ରୀକୃଷ୍ଣଙ୍କ ପାଶେ ପ୍ରବେଶ)

ଲଳିତା—ଶ୍ୟାମସୁନ୍ଦର ! ଆଜି ଶ୍ରୀମୁଖ କାହିଁକି ମଳିନ ଦିଶୁଛି ? ମାପମୂଳ ଛାଡ଼ି ଏକାକୀ ଏ କୁଞ୍ଜବନରେ କାହିଁକି ବସିଛ, କହିଲ ? ଗୋରୀପର ଛପି ଛପି ଆଖି ପିଚୁଡ଼ାକେ ସବୁ ମାନ ଇଜ୍ଜତ ପଦାରେ ପକାଇବା ସୁନ୍ଦର ହେଉଛି ? କେତେଦିନୁ ଏହି ରୀତି ଶିଖିଲ, ମୋହନ ?

"ଙ"

(ରାଗ—କୁମ୍ଭକାମୋଦୀ । ଏକତାଳୀ)
(ନୂଆନଟ ପଟଳୀ—ବୃତ୍ତେ)

ନଧୁବନ-ଲଲାଟ-ଚନ୍ଦନ ହେ, ନହୁଅ ଆଜ ବିମୁଖ ।
ନଳମା ପରାଗେ ଅଳ ଅନୁରାଗେ
ନ ଏନୋକ ଚୁମ୍ବି ହେଜ । ୦ ।

Digitized by srujanika@gmail.com

ନିକୁଞ୍ଜ ନିଳୟ          ପାଇଛି ଅଭୟ
ମିଳି ଇନ୍ଦ୍ରମଣି ସଞ୍ଚ ।
ନେପଥ ସ୍ଥାଣେ          ଆସେ ଅନୁମାନେ
ନଳିନାକ୍ଷୀ ବାଛି ବାଛି । ୧ ।
ନିଶାକର ମୁଖ          ଝାଉଁଳନ୍ତି ସୁଖ
ନାହିଁ ତ କଛି ଶ୍ରୀଅଙ୍ଗେ ।
ନାଗରୀ-ମଧ୍ୟା          ନାଗରୀଙ୍କ ଶ୍ରଦ୍ଧା
ନିନ୍ଦନ କରନ୍ତି ବ୍ୟଙ୍ଗେ । ୨ ।
ନାକ ଅପସରୀ          . କେ ସୁର ସୁନ୍ଦରୀ
ନୟନେକ ଗଲେ ପଡ଼ି ।
ନବ ନବ କାନ୍ତି          ମଉଳଲ ଭ୍ରାନ୍ତି-
ବଶରେ ଯାଉଛନ୍ତି ସଡ଼ି । ୩ ।
×     ×     ×
×     ×     × । ୪ ।
ନିଷ୍ଠୁରେ ମଉନେ          ଶ୍ରବାବେଶେ କ୍ଷଣେ
ମାପମୂଳେ ହୁଅ ଉଭା ।
ନିରେଖିବେ ରୂପ          ନିଆଳୀ ବହୁତ
ରମେ ହେଉ ଅନୁକମ୍ପା । ୫ ।

ଶ୍ରୀକୃଷ୍ଣ—ଲଳିତା ! ଏସବୁ ତୁ କଣ କହୁଛୁ ମୁଁ କିଛି ବୁଝିପାରୁ ନାହିଁ । ସ୍ୱପ୍ନରେ ସୁଦ୍ଧା ଏକଥା କେବେ ମୋ କଳ୍ପନାରେ ଆସିନଥିଲା । ତୁ ଏ ହାସ ପରିହାସ ମୋ ପାଖରେ ଆଜ ଛାଡ଼ିବୁ ନାହିଁ ଦେଖୁଛି । ଧେନୁପଲ



Digitized by srujanika@gmail.com

ଧର ଘୁର ଘୁର ଆସୁଆସୁ ମୋ ହନ ତ ଅସର
ହେଉଛୁ । ଆଜ—

"ଚ"

(ରାଗ—ପଞ୍ଚମ ବରାଡ଼ି । ତାଳ—ତ୍ରିପୁଟା)
(ଗୃହେଁ ଗୃହେଁ ଭୋ ସରଣୀ—ବୃତ୍ତେ)

ଚନ୍ଦ୍ରଭାନୁ-ତାପେ ତନୁ, ତାପିତ ହେଉଁ ଗୋଧନୁ
ଚେତଲେ ଯୋଞ୍ଚ ଘର୍ମବନ୍ଦୁମାନ
ଚରମାଚଳରେ ହନ- ମହୁଖ ହେବାରୁ ମ୍ଳାନ
ଚରମେ ନେଉଛୁ ମୁଁ ବଶ୍ରାମ ଗୋ, ଗୃରୁହାସୀ
ଚନ୍ଦ୍ର ମଣେ ମୋ ଅନ୍ତର ଗତେ,
ଚହ୍ନି ଦେଲ୍ପର ହୃଦ ସତେ,
ଚପଳେ କହ୍ଲୁ ଯାହା ଅନ୍ଧାର ପଥରେ ରାହା
ଚପଳା ସମ ଦେଖାଉ ମୋତେ ରେ । ୧ ।
ଚତୁର ମୋର ନାହିଁ ଦମ୍ଭ ଗୃହଁଛୁ ତା ପଶରମ୍ଭ
ଗୃହିଁଥିଲ ବୋଲି କାଲ ଥରେ
ଚୈତ୍ରରଥକୁ ଧିକ୍କାର କଲ୍ ଏହୁ ବନସ୍ଥଳ
ଚଳାପାଙ୍ଗୀ ଯିବା ସମୟରେ ଗୋ, ଗୃରୁହାସୀ
ଚେଳାଞ୍ଚଳ ଟାଣି ମୁଖେ ଦେଲ୍,
ଚକ୍ଷୁରୀଟା କଉତୁକେ ନେଲ୍
ଚଟୁଳ ସୁମନ ତୋଳ କହ୍ବ ମୁଁ ପଦେ ବୋଲ
ଭାବୁ ଭାବୁ ଅନ୍ତର୍ହିତ ହେଲ୍ ରେ । ୨ ।
ଚୈତ୍ର କଲପର ଦେହ ହେଉ ଅଛୁ ତ ଅଥୟ
ଚଞ୍ଚରକ ମଧୁକରେ ଆଶା

Digitized by srujanika@gmail.com

ଚେଟିମା ପଣକୁ ତାର          ଯୋଗ୍ୟ କେଉଁ ରମାବର
ଚରଣ-ରୂଳନେ ଶୋହେ ରସା ଗୋ, ବୃନ୍ଦାବାସୀ
ଚନ୍ଦ୍ରାଇ ଦଅନ୍ତୁ ଅବା ଯଦି,
ଚଞ୍ଚଳାକ୍ଷୀର ମାନସଭଙ୍ଗି
ଚରାଚରରେ ମୋ ପ୍ରାଣ          ରହନ୍ତା ସନ୍ଧି ନଦାନ
ରୂକର ଦଶାକୁ ହେଲେ ଭଳି ରେ । ୩ ।
ରୂମୀକର ବରନା ସେ          ଜାଣି ଯଦି ଦାବେ ନାଶେ
ରୂରୁ ମାଳବକ ପୀରତରେ
ରୂଖିବା ପାଇଁ ଉତ୍କଣ୍ଠା          ରୈବ ପ୍ରୀତି ସଂଧାବନ୍ଧା
ଚେତ ପିନା କହେ ଭରଷରେ ଗୋ, ବୃନ୍ଦାବାସୀ
ରୂଷ୍ଟ ପ୍ରମାଣ ତାକୁ ଆଣି
ଶୁଣାଉ ଯଦି ଲଳିତ ବାଣୀ
ଚମକ ଇଷିତରେ          କହନ୍ତୁ ଇଷି ତରେ
ରମେ କି କଲ୍ ପ୍ରାଣମିତଣି ରେ । ୪ ।



ଲଳିତା—ଛନ୍ଦାଚରଣ ! ଏ ଛନ୍ଦ ଅଭିଳାଷ ରୂଡ଼ । କିନ୍ତୁ ପର ଜାଣନାହିଁ ? ଛି, ଛି, ଏ କି କଥାମ ! ଏକଥା ଶୁଣିଲେ ସେ ଆଉ ତା ରୂଇ ପୀମା ମାଡ଼ିବନି ! ଯାହା ହେବାର ହେଲାଣି, ଏକଥା ଗୁପତରେ ଛପାଇ ରଖ ।

"ଛି"

(ରାଗ—ମୁଖାବରୀ । ତାଳ—ତ୍ରିପୁଟା ।)

(ଛଳ ବାହ୍ମଣ ହେ—ବୃତ୍ତେ)

ଛନ୍ଦ ଅଭିଳାଷ ହେ, ଛପାଇ ରଖ ତ ହେ । ପଦ ।

Digitized by srujanika@gmail.com

ଛୁଟିଛୁ ସୁଷମା ରାଣୀ, ଛୁ ଛୁ କ ବିବେକୀ ବାଣୀ । ୧ ।
ଛଟକେ କେଉଁ ଭେଳକ, ଛୁଟି କେ' ଗୋଳ ଦେଲା କା । ୨ ।
ଛୁମୁଛଡ଼ା ଗୁଆଁ ଳୀଙ୍କି, ଛଟକେ ସେ କରିବଟି । ୩ ।
ଛୁର କଥା ପାଇଁ ଯାଇ, ଛୁଇ ମୋ ଦେଖାଏ ନାହିଁ । ୪ ।
ଛୁଇଁ କର ତ ଶପଥ, ଛଦ୍ମ ନାହିଁ ହୃଦଗତ । ୫ ।
ଛଳିବ ନାହିଁ ଯା' ହେବ, ଛ'ରେ କହେ ରାମ ଭେଦ ।୬।



ଶ୍ରୀକୃଷ୍ଣ—ତୁ ଏ ଭଳି କଥା କହିଲେ ଶେଷରେ ମୁଁ ମାଳ ଯମୁନା ଜଳରେ ଝାଁସ ଦେବି । ଏଥିରୁ ପ୍ରତିକାର ନକଲେ ମୋର ଆଉ ପରିତ୍ରାଣ ନାହିଁ । ଲଳିତା ! ବିରହ ବାଧା କଣ ତୁ ଜାଣୁ—ମୁଁ ଅଧିକ କହିବା ଅନୁଚିତ ।

"ଜ"

(ରାଗ—କେଦାର । ଆଡ଼ତାଳୀ)

(ଜାଣିଛୁ ମୁଁ—ବୃତ୍ତେ)

ଜୀବନେ ଜୀବନ ଝାଁପିବି ଗୋ ଲଳିତେ
ଜୁରିଛୁ ବିବେକ ଯୋଷାବର
ଜାତ-ଜାତବେଦ-ବିରହ ଉଦ୍‌ବେଗ,
ସୁଧା ସିଞ୍ଚି ବେଗେ ରକ୍ଷାକର । ୦ ।
ଜଗି ମୁଁ ନଥିଲି କାଲି ବୁଲି ବୁଲି
ଆସୁ ଆସୁ ଦେଖା ପାଇଲି ଛଇଳୀ ।
ଜାଗ୍ରତ ସ୍ୱପନେ ଦେଖିଲି ରତନେ
ଖସିଗଲା ବଂଶୀ ଖରତର । ୧ ।

Digitized by srujanika@gmail.com

ଜଡ଼ପର ଜଡ଼- ବର କଦମ୍ବର
ମୂଳେ ନେଉଛି ହତଜ୍ଞାନ ବାରବାର
ଜରତ ଅବସ୍ଥା ସମ ହେଲ ଦଶା
ଜିବାଅଛି କଲ ଏ ପ୍ରକାର । ୨ ।

ଜୀବନେ ମୋ ଆଶା ନାହିଁ ରେ ସୁଦୃଶା
ଜୀମୂତବାହନ ପଦେ ହ-ଆକାଂକ୍ଷା
ଜୀଣ ସୂଚଉରେ ଅନ୍ତର ଭିତରେ
ଜାଗ୍ରତ ମାନସ-ଘ୍ରଣୀବର । ୩ ।

ଜନ ଅପବାଦ ବଢ଼ୁହିଁ ପ୍ରମାଦ
ଜଗଜ୍ଜି ମୋହନ ମନେ ଅବସାଦ
ଜଲପିଲେ କାନେ କହ ତତକ୍ଷଣେ
ଜଗତ ଜଞ୍ଜାଳେ ଯିବ ଖର । ୪ ।

ଜାଗର ଜାଳିବ ତା' ନାମ ଭଜିବ
ନାମ ମନ୍ତ୍ର ଧ୍ୟାନେ କାଳ କଟାଇବ
ଜାତକୁଳ-ମାନ ପାଇଁ ଅଭିମାନ
ଜାତକଲେ ରାମେ ! ଧୈର୍ଯ୍ୟଧର । ୫ ।



ଲଳିତା—ରସିକଶେଖର ! ପ୍ରେମ ଯମୁନାରେ ଝାସ-
ଦେଇ ବୁଡ଼ିଯିବ ବୋଲି ଭୟ କରୁଛ କାହିଁକି ମ ?
ଏ ବିଷମ ପ୍ରୀତିର ଦାଉ ସମ୍ଭାଳି ପାରିଲେ ହିଁ ବନା !
ଧୈର୍ଯ୍ୟ ଧର । ଧୀରପାଣି ପଥର କାଟେ ପର ?

Digitized by srujanika@gmail.com

"ଝୁ"

(ରାଗ—ମୁଖାରୀ । ଆଡ଼ତାଳୀ ।)

(ଝଗଡ଼ ମାନ—ବୃତ୍ତେ)

ଝପଟି ଗଲ କେଶରୀ ଦମ୍ଭେ
ଝାଉଁଳିଲ ସିନା ପ୍ରୀତି ଆରମ୍ଭେ ହେ ॥ ୦ ॥
ଝସବାସ ସୁତ-ଆନନ କାନ୍ତ
ଝଳ ଯାଇଅଛି ନଅନ୍ତୁ ଶ୍ରାନ୍ତ ॥ ୧ ॥
ଝଲମଲ ଦ୍ୟୁତି ଦେଖିବା ପାଇଁ
ଝଟକେ ଆଗ୍ରହ ବଳାଅ ନାହିଁ ॥ ୨ ॥
ଝଟତି କାହ୍ନୁଁ ଏ ବିଷମ ପ୍ରୀତି
ଝୁରି ହୁଅ ଶ୍ୟାମ ନାହିଁକ ଭୀତି ॥ ୩ ॥
ଝୁମୁରୁ ନିଃସ୍ୱନ ନୂପୁର ପାଦେ
ଝିମିଟେ ଠାଣିଲ୍ଲ ଏହି ପ୍ରମାଦେ ॥ ୪ ॥
ଝସକେତୁ ବାଧା ଅତି ଭୀଷଣ
ଝଞ୍ଜା ବାତେ ଯେହ୍ନେ ରମ-କାନନ ॥ ୫ ॥

---

ଶ୍ରୀକୃଷ୍ଣ—ଲଳିତା ! ତୋର ନିଷ୍ଠୁର ବଚନ ମୋର ମରମ ଦହୁଛି । ଏଣିକି ବାଧିବା କଥା ନକହି ପ୍ରତିକାର ଚିନ୍ତା କଲେ ଭଲ ହୁଅନ୍ତା । ପ୍ରେମ ତରଙ୍ଗିଣୀ ପ୍ରୀତି ସାଗରରେ ଝାସ ଦେବ ବୋଲି ଅବିରତ ବହିଚାଲିଛି । ତାକୁ ବନ୍ଧ ବାନ୍ଧି ରଖିଲେ ସେ କି ମାନ ରହିବ ?

Digitized by srujanika@gmail.com

"ଛନ୍ଦ"

(ରାଗ—ମୋହନ । ଆଦିତାଳ ।)

(ନବଗଙ୍ଗ ଶୁଭାଙ୍ଗି—ବୃତ୍ତେ)

ନନ୍ଦଅରେ ଦମନ ବାରଣକଳଟଗତ
ନକଲେ ତୁ ପ୍ରତକାର ନାହିଁ ଅନ୍ୟ ସାଧ କା'ର
ନଦାରୁଣ ନୃଦ୍ଧ ତୁ ଫପ୍ରତ ॥ ୧ ॥

ନୀରଦ କୋଳେ ଚପଳା ନୀରଜେ ମତ୍ତ ଭ୍ରମରା
ନ ଶୋହିବ କ ମୁଁ ତାଂ' କତ ॥ ୨ ॥

ନାଗଚ ବନ୍ଧଇ ମାର ନଷ୍ଟୁର ବଚନେ ମାର
ନଧର ଅଧରେ ଦିଅ ଦିପି ॥ ୩ ॥

ନବ ମାଳକା ଅନେକ ନତ୍ୟ ଧୁଆଅ ତା କ୍ଲେଶ
ନାହୁଁ କ ତୁ ଜାଣି ମତଗତ ॥ ୪ ॥

ନପୂମ କର କହୁଛୁ ନିଷ୍ଠେ ମରମ ଦହୁଛୁ
ନବନୀତ-ଦେହା ରାମ ଚନ୍ଦ୍ର ॥ ୫ ॥

---

ଲଲିତା—ହେ ଲମ୍ପଟ ! ଛୋକା ବୟସରେ ଏ ବିଷମ ପ୍ରୀତି ଶିକ୍ଷା କାହୁଁ ପାଇଲ ? ତା' ପରେ, ଏ ବୈରପ୍ରୀତି ବେଭାର ଆମ ସମାଜରେ କେବେ ଚଳେ ନାହିଁ । ମାଆ ଯଶୋଦା ଜାଣିଲେ ତୁମର ରସିକ ପଣିଆଁ ରହିବନି ! ତୁନିହୁଅ, ଲୋକେ ଶୁଣିଲେ ଟାହିଲ କରିବେ ।

Digitized by srujanika@gmail.com

"ଟ"

(ରାଗ—ବସନ୍ତ । ଏକତାଳୀ ।)

(ଟାଣପଣ କର ସାର—ବୃତ୍ତେ)

ଟୋକା ବୟସେ କ ଭଲ ହେ (ମୋହନ)

ଟୋକୀ ସମାଜରେ କାହୁଁ ବା ଶିଖିରୁ

ରଙ୍ଗର ପୀରତି ବେଭାର ॥ ୦ ॥

ଟିକଏ ହେଲେକ ମନେ ନାହିଁ ଭ୍ରାନ୍ତି

ନନ୍ଦରଜା ସୂନୁ ବୋଲି,

ଟେକ କଲ ପାନ ନାହିଁକି ହେ ଜ୍ଞାନ

ପୀରତି ଜହର ଗୋଳି ॥ ୧ ॥

ଟାହୁଲ କରବେ ବାରତା ଶୁଣିଲେ

ଯେତେ ତା' ସଖିସମାଜ,

ଟାକର ମାରକ ଆଖିମରା ହାନ୍ତି

ନାହିଁକି ମୁହଁରେ ଲଜ ॥ ୨ ॥

ଟୋପେ ହେଲେ ଝର ପ୍ରୀତି କାଦମ୍ବିନୀ

ଠୁଲ ନ ହୋଇଛି ଅଙ୍ଗେ

ଟାକ ତା ମୁରତି କହିଲେ ହେଁ ଟେକ

ବୁଝିବକ ପରସଙ୍ଗେ ॥ ୩ ॥

ଟଙ୍କାର ନାରାଚ ମାରଲେ ମାରୁ ସେ

ଦର୍ପକ ଦର୍ପ ଦେଖାଇ

ଟିକ୍‌ଏ ମାରବେ ସହି ଯାଅ ଏବେ

ମଉନେ ମୁହଁ ଶୁଖାଇ ॥ ୪ ॥

Digitized by srujanika@gmail.com

ଟେମକ ବାଜବ ବ୍ରଜପୁର ଯାକ
ଜାଣିଲେ ଯଶୋଦା ରାଣୀ
ଟାଉକର ରାମ କୃଷ୍ଣଙ୍କୁ ପଣନ୍ତ
ଉଦ୍ଧାଡ଼େ ରଖିବେ ଠାଣି ॥ ୫ ॥

ଶ୍ରୀକୃଷ୍ଣ—ଠେକବାକୁ ପିନା ଏ ପାଞ୍ଚ ପାଞ୍ଚୁଛୁ, ଲଳିତା ! ମୋର ହୃଦକଥା କାହିଁ ତଳେ ହେଲେତ ବୁଝୁନାହୁଁ ? ମୁଁ ବ୍ରଜର ଗୋପାଳ, ହେଲେହେଁ ହୃଦାହ୍ୱତ ଭାବ ଉଚିତ କଥା କହୁଛୁ ପିନା, ଏଥିରେ ଅପରାଧ କଣ ଅଛି କହିଲୁ ?

"ଠ"

(ରାଗ—ଦେଶାକ୍ଷ । ଆଡ଼ତାଳୀ ।)
(ଠିକ ଠ ବର୍ତ୍ତୁଳ—ବୃତ୍ତେ)

ଠକ ନଯାଅ ତୁ ସହି ଅନା ମୋ ହୃଦରେ ॥ ୦ ॥
ଠକାଠକ ଭାବମାନ ନ ଦେଖା ତୁ ପାଞ୍ଚ ଆନ
ଅପହର କାହିଁ କା' ପ୍ରୀତି ବଉ ରେ ॥ ୧ ॥
ଠେଙ୍ଗାଧରା ଗୋପାଳ କ ଅନୁଚରେ ବୋଲୁଅଛୁ
ଅଛି ମୋ ହୃଦାହ୍ୱତ ଜ୍ଞାନ ଚଉରେ ॥ ୨ ॥
ଠଉରଛୁ ହୃଦକଥା ଆନ କ ବୁଝିବ ବ୍ୟଥା
ଅନୁଭବୀ ପିନା ଜାଣେ ଭା ଶ୍ରୀତ ରେ ॥ ୩ ॥
ଠରାଠର ନୋହିଲେହେଁ ମୋ ଚନ୍ଦ୍ରା ପଶିଛୁ ଦେହେ
ଆଖିର ଦେଖା କାହୁ ପ୍ରାଣମିତ ରେ ॥ ୪ ॥



Digitized by srujanika@gmail.com

ଠ'ଷରେ ଠାକୁର ଧାସ୍ତି    ରାମ କହେ ଜାଣେ ନାହିଁ
କାହା ପ୍ରେମ କେତେସର ଜଗତରେ ॥ ୫ ॥

---

ଲଳିତା—ପ୍ରେମିକ ! ତୁମ୍ଭ ଦୁହିଁଙ୍କର ଯେବେ ମନ ମିଶିଛି ମନାଇବା ପାଇଁ ଏକାନ୍ତରେ କଥା ହୁଅ । ମୁଁ ବାରଣ କରିବ ନାହିଁ । ମନକଥା ମନରେ ମାରି ଏମିତି ତୋଳା ଛଳଛଳ କଲେ ଫଳ କଣ ? ପାରିବ ତ, ନିଜେ ଚେଷ୍ଟାକର—କୃଷ୍ଣ, ମୋ ଉପରୁ ସବୁ ଆଶା ଭରସା ଛାଡ଼ ଏଣିକି ।

"ଡ଼"

(ରାଗ—ତୋଡ଼ିପରଜ । ଆଡ଼ତାଳୀ)

(ଡର ନାହିଁକି ହେ—ବୃତ୍ତେ)

ଡ଼ୂବ ଯିବଟି ହେ ପୀରତି ସିନ୍ଧୁର ବନେ
ଡକାଇ ରମାକୁ    ଭେଳା କରିବାକୁ
ସାହସ ବାନ୍ଧ ଯତନେ ॥ ୦ ॥
ଡାକିଲ କି ଦଣେ    ଗୃହିଁଥିବଣି ସେ
ଶକୁର ସଜଡ଼ା ପାଇଁ
ଡଗର ମୁଁ ନୁହେ,    କଥାହୁଅ ଦୁହେଁ,
ଏକାନ୍ତରେ ମନା ନାହିଁ ॥ ୧ ॥
ଡାଳିମ୍ବ ରଦନା    ରଙ୍ଗୀନ ମୂରତି
ରଙ୍ଗାଣୀବ ସମ ଆଙ୍କ
ଡକରା ହୋଇଲେ    ଶହକରେ ଯିବ,
ଭଙ୍ଗି କର ତିନ ବାଙ୍କ ॥ ୨ ॥

Digitized by srujanika@gmail.com

ତଡ଼କ ବଳକ ନହୁଅ ଏଥର
ରତ ବାସ ଯାଏ ଶୁଖି
ତେଣୁ ହେବା ଦେଖି ରଖିଥିବ ଲେଖି
ଅବଳାକୁ ଚନ୍ଦ୍ରମୁଖୀ ॥ ୩ ॥
ତେଜି ଯେତେକ ଖଣ ଶିଶିରକରଙ୍କ
ଅଙ୍ଗ ଦେଖେ ଗଲ ଲାଗି
ଭଣ୍ଡିମ ବଜାଇ ତା ମନ ମଜାଇ
ମିଶନ୍ତୁ ପୀରତ ମାଗି ॥ ୪ ॥
ତୋଳା ଛଳ ଛଳ ନକର ନାଗର
ନାଗରୀ-ରଚନ ବନେ
ଡାକେ ନଣିଦନ, ହେ ମଧୁସୂଦନ,
ରକ୍ଷାକର ରାମ ଧନେ ॥ ୫ ॥

---

ଶ୍ରୀକୃଷ୍ଣ—ତୋ ବିନା ଆଉ କେ ମୋର ସାହା ଭରସା ଅଛି ଲଳିତା ! ତୁ ପାରିବୁ ବୋଲି ସବୁକଥା ଖୋଲି କହିଲି । ଏଣିକି ତୋ ମନ । ଆପଣା ଯଦି ପରଭଳି ଅଚହ୍ନା ହେବ—କାହା ଆଗରେ ଗୁହାରି କଲେ ପାଇବି କଅଣ ?

"ତ୍ର"

(ରାଗ—ଦେଶାକ୍ଷ । ତାଳ—ତ୍ରିପୁଟା । )

(ତାଳେ ତ ତାଳିଲୁ—ବୃତ୍ତେ)

ତଙ୍କେ ତ କହୁଛୁ ଧନ ନଷ୍ଟୁର ଏ ଗାରଣରେ ॥ ୦ ॥

Digitized by srujanika@gmail.com

ତଳିତ୍ତୁ ହେମ ମଞ୍ଜରୀ          ମୋ ପରେ ଶରଧା କର
ତୋ ବିନା କେ ଦେବ ଗୋରି ମୁକୁଳାଇ ତଡ଼ିତରେ ॥୧॥
ତୋକ ନାହିଁ ଆନ ବିଷ          ପ୍ରେମ-ଗରଳ ଏହି ତ
ତେଣୁ କାମ-ମାନବେଶ ଝୁରି ମରେ ତ ରତିରେ ॥ ୨ ॥
ତମପଣ କରନାହିଁ          ଏଡ଼େ ତୃଷା କାହିଁପାଇଁ
ଜାଣୁ ଯୌବନ ବନରେ ବାଜେ ଯୁବା ବଲ୍ଲକୀରେ ॥ ୩ ॥
ତଗ ବୋଲୁ ନାନାରସେ          ରସଦାମୀ ସେ ସୁରସେ
ଜଡ଼ରହେ ଆଦରସେ ନେଇ ତାର ଶ୍ରୁତିକରେ ॥ ୪ ॥
ତାଳ ପୟୋଧର-ରସ          ପୟୋଧର-ମଣ୍ଡାବଶ
ହେଉ ସେ ରାମ ତୃଷାର୍ତ୍ତ ନଅ ତୃଷା ହରିକ ରେ ॥୫॥

---

ଲଳିତା—ହେଉ, ମନା କଲେତ ମାନୁନାହିଁ । ତୁମ କଥା ପ୍ରକାରେ ଯାଇ ସଖୀଙ୍କୁ ମୋର କହିବ । ମୋ ଆସିବା ପଥକୁ ଚାହିଁ ବସିଥାଅ ମୋହନ,—ବଂଶୀ ଅଧରେ, ବଙ୍କ ଦୃଷ୍ଟିରେ । (ପ୍ରସ୍ଥାନ, ବହୁକ୍ଷଣପରେ ପୁନଃ ପ୍ରବେଶ) । କୁଞ୍ଜବିହାରି ! ଏ ଯମୁନାତଟ କୁଞ୍ଜବନରେ ନବୁଲ ପ୍ରୀତିବନରେ ପ୍ରେମବିହାରୀ କାହିଁକି ହେବାକୁ ମନ ବଳାଉଛ, କହିଲ ? ତୁମଯୋଗୁଁ ସ୍ଥିତ ପଥର କର ସବୁ ଗଞ୍ଜଣା ସହିବାକୁ ହେଲା । ଛାଡ଼— ଏ ଅମାନିଆଁ ପଣ ଛାଡ଼ । ଆଉ ଦିନେ ସେ କଥା ମନରେ ଧରିବ ନାହିଁ, କହୁଛୁ ।

Digitized by srujanika@gmail.com

"ଣ"

(ରାଗ—ସୋମ । ଆଡ଼ତାଳୀ ।)

(ଅତସୀ କୁସୁମ ସମ—ବୃତ୍ତେ)

ଅଳପକେ ଝାଉଁଳାଲ ମୃଦୁ ମଲ୍ଲି-କଳଟି । ୦ ।
ଅଳି ନଦେଖୁଁ ଏ ଦଶା ଅଟକ କରିଲ ବସା
ଆଜ କେବେ ନଶୁଣାଅ ପୀରତିକ ବୋଲଟି । ୧ ।
"ଅନ୍ଧାର କଦମ୍ବବନେ ଅନ୍ଧ କେ' ସେ ନଵ ଭ୍ରମେ
ଅକୁହା କଥା ଶୁଣାଉ ସମଜାଲୁ ବାଟପୀ କ । ୨ ।
ଅସର ନୋହୁଣୁ ଧନ ଆଉ କ ଲୋଡ଼ା ମୋ ପ୍ରାଣ
-ଦଶା ହୋଇଲେ ବିପନ୍ନ କହିବ ସଖିଶ୍ରେଣୀଙ୍କି । ୩ ।
ଅମାନଆ ମଧୁପଟା ଅକାରଣେ କରେ ହଟା
ଅଛୁ ନାନା ରଙ୍ଗ ଫୁଲ ନକୁଞ୍ଜେ ନଗୁଞ୍ଜରେ କି" । ୪ ।
ଅଜଣା ମାନସ ଜଳେ ମରାଳରାଣୀ ବିହରେ
ଅରବିନ୍ଦାନନ ଖରେ ଯାଇ ଧର ମୂରତିକ । ୫ ।

(ଶ୍ରୀକୃଷ୍ଣ ବିସ୍ମୟାଭିଭୂତ ହୋଇ ନୀରବ ରହିଲେ । ଲଳିତାଙ୍କୁ କିଛି କହିବା ପାଇଁ ବିଚାର କଲେ—କିନ୍ତୁ ଗଭୀର ଦୁଃଖବାଧା ଯୋଗୁଁ କଣ୍ଠରୁ ଆଉ ଭାଷା ଫୁଟିଲା ନାହିଁ । ଲଳିତା ଏତାଦୃଶ ଅବସ୍ଥା ଦେଖି ସାନ୍ତ୍ୱନା ନଦେଇ ପୁନର୍ବାର ଶ୍ରୀରାଧାଙ୍କ ଉଦ୍ଦେଶ୍ୟରେ ପ୍ରସ୍ଥାନ କଲେ । )

(ଲଳିତାର ଶ୍ରୀରାଧାଙ୍କ ପାଶେ ପ୍ରବେଶ)

Digitized by srujanika@gmail.com

ଲଳିତେ—ସଖି ! ନାହିଁ କରୁ କରୁ ଯିବାକୁ କହିଲୁ, କଥା ରଖି ଗଲି । ତୋ କଥା କହିବାରୁ ରାଗରେ ସେ ଯାହା ତମତମ ହେଲେ—ମୋତେ ଭାରି ଡର ମାଡ଼ିଲା । ଅଳ୍ପ କେତେକଥା କହିଛୁ ଛୁନ୍‌ଛୁଟେଇ ପଳାଇ ଆସିଲି । ତୁ ଯାହା କହିଲେ କହପଛେ, ଏ ମୋର ପ୍ରୀତିକି ଦୂରରୁ ଜୁହାର ।

“ତ”

(ରାଗ—କନଡ଼ା । ତାଳ—ତ୍ରିପୁଟା ।)

(ତୋ ଦେଖ ତମାଳ—ବୃନ୍ତେ)

ତପମାପୁ-ବରନାରେ ତୋ ଲାଗି ମୁଁ ଚଳିଲି ରେ ।
ତାମରସ ମୁଖ ରୁହିଁ କୁହା ଭାଷା ଭ୍ରଷିଲି ରେ । ୦ ।
ତମାଳ ମାଳ ଭୂଷାକୁ ତ୍ରିଭଙ୍ଗ-ଭଙ୍ଗି ଛଟାକୁ
ତରଳାକ୍ଷୀ ରୁହଁ ରୁହଁ କହିଲୁ ତୁ ରସିଲରେ । ୧ ।

କଥା—ଏବେ ସେ ମୋତେ ଯାହା କହିଲେ ଜାଣୁ ?

ପଦ୍ୟ—“ତରଣୀ ତନୟା କୂଳେ ତୁମସମ ବାମାକୁଳେ
ତୁଳାକୋଟିତ ମଞ୍ଜୁଳେ ବଜାଇ ଆସନ୍ତିଟିରେ । ୨ ।
ତା ମଧ୍ୟୁ କେ ସୁକୁମାରୀ ତୋତେ ଦେଖିଛୁ ପଚାରି
ତଟସ୍ଥ ହେଲ କାହାର ଆଦରଣ ଟାହୁଲରେ” । ୩ ।
ତରକଳି ଶୁଣି ଧନୀ ତୋର ତାର ଅନାଅନ
ଖରେ ହୋଇଥିବ ଯଦ୍ଧ ବହନ୍ତା ଏ ଖାତିକ ରେ । ୪ ।
ତିରସ୍କାର କଲେ କର ତହିଁ ତାତ ଭାବାନ୍ତର
ଭୁକ୍ତି ପ୍ରେମେ ନିରନ୍ତର ରମମନ୍ତ ଥାଇକି ରେ । ୫ ।

———

Digitized by srujanika@gmail.com

ଶ୍ରୀରାଧା—ସତେ ସହି ? ସୁନ୍ଦର ଏତେ ହୃଦର କଲେ ? ମୋ ରାଣ ଅଛି, ଆଜ ଥଟ୍ଟା କରନା । ସତକଥା କହିଲୁ !

"ଥ"

(ରାଗ—ତୋଡ଼ିଜଙ୍ଗଲ । ଆଡ଼ତାଳୀ ।)

(ଆଦିରେ କଦ—କୃତେ)

ଥାଇ କ ଜୀବନେ ସାର୍ଥରେ ସହଚରି
ଥଟ୍ଟାରେ ଦହନା, ରାଣ । ୦ ॥
ଥୋଇ ଅନ୍ତରରେ ଅନ୍ତର ସେ କଲେ
ଲଗଇ ମୋ ଅନୁମାନ ॥ ୧ ॥
ଥିର ହେଉନାହିଁ ବିଷମ ଜ୍ୱାଳାହିଁ
ଦିଏ ବୃଷାସନ-ବାମ ॥ ୨ ॥
ଥୋଇଛୁ ତ ଧୀରେ ମାନସ ମଦରେ
ବିବୁଧଙ୍କୁ ଦେଇ ପ୍ରାଣ ॥ ୩ ॥
ଥେଣ୍ଟ ପ୍ରୀତି ଏହି ବିଧିରେ ନୁହଇ
ମନେ କଆଁ ଅଭିମାନ ॥ ୪ ॥
ଥରେ କପାଁ ମୁହିଁ ହେଲି ମୁହାଁମୁହିଁ
ଏକ ହେଲା ବୋଲେ ରାମ ॥ ୫ ॥

———

ଲଳିତା—ଭଲ ସାହସ କଲୁ ସଜନ ! ଏଣିକ ହଠହଠା ହୋଇ ମରିବା କଥା ସାର ହେବ ସିନା । ଆଚ୍ଛା, ତୋ ଆଶା ମେଣ୍ଟାଇ ଦେଲେ କ ପଦକ ଦେବୁ କହିଲୁ ?

Digitized by srujanika@gmail.com

"ଦ"

(ରାଗ—ଭଟିଆର । ଆଡ଼ତାଳୀ ।)

(ରେ ଦୁଃଖିଧନ—ବୃତ୍ତେ)

ରେ ଦରଶନ, ଦଆଇଲୁ ନାହିଁ କରୁ କରୁ ଧନ
ଦର୍ଭହାସିନ ରେ ସାହସକୁ ଧନ୍ୟ । ପଦ ।

ଦାମିନୀ ନର୍ତ୍ତନ ବଉଦରେ
ଦନେ ସଖୀ ମୋତେ ହର୍ଷଭରେ
ଦେଖାଇ ସୁନ୍ଦର ' ଦେଲୁ ପଟାନ୍ତର
କଳାକୋଳେ ଧଳା ନୃତ୍ୟକରେ ॥ ୧ ॥

ଦୂରକର ସଖୀ ଦରସକୁ
ଦର ନାହିଁ ଶ୍ୟାମ ମିଳନକୁ
ଦରଫୁଟା ହସ ଫୁଟାଅ ସରସ
ସରବାଙ୍ଗେ ଭଜ ବିଳାସକୁ ॥ ୨ ॥

ଦନ୍ତ ହାରଛନ୍ତି ପୀତବାସ
ଦସ୍ତାକଲେ ଏବେ ଚେଳ ହାସ
ଦକ୍ଷ ତୁ ବଧିରେ ବକ୍ଷଶୋଭିନୀ ରେ
ରମ ଯାଇ ନିକୁଞ୍ଜ ଆବାସ ॥ ୩ ॥

ଦେବଙ୍କପେ ବନ୍ଦେ ବନଧାର
ଦେବ ହ'ପଦକେ ପ୍ରେମସାର
ଦୃଷ୍ଟରଜା ଆଜ କାମରାଜା ମାଗି
ଦୁରଶାକୁ ହେବ ପରିକର ॥ ୪ ॥

Digitized by srujanika@gmail.com

ଦେବୁ କ ପଦକ ମୋଦ ବନ୍ଧ
ଦସ୍ତୁାଳ୍ପ ପଣରେ  ବରସନ୍ଧ
ଦଅ ଭୁ ଅଧର   ପୀୟୂଷ ମାତର
ଦଗ୍ଧଭୂତ ନୋହ୍ନ ଶ୍ୟାମଙ୍କୁହିଁ ॥ ୫ ॥
ଦଉଡ଼ଲ କଥା ପରମାଣେ
ଦଉଡ଼ ଲଗାଇ ପଞ୍ଚବାଣେ
ଦେଲ ଟାଣି କରେ   ଏବେ ବିବେକରେ
ଦ୍ୱେଜ କଥା ଗ୍ରମ ଧାୟେ୍ ଗ୍ରମେ ॥ ୬ ॥

———

ଶ୍ରୀରାଧା—ସନ୍ଧ ! ତୋର ପାଶବାର ପଣକୁ ମୁଁ ଧନ୍ୟ-ବାଦ ନ ଦେଇ ରହିପାରୁ ନାହିଁ । ଥରେ ସେ ନାଗରବରଙ୍କ ରୂପଛଟା ବର୍ଣ୍ଣନ କର କହିବୁଟି !

"ଧ"

(ରାଗ—ତୋଡ଼ିଜଙ୍ଗଲ । ଆଠତାଳୀ । )
(ଧୀରାରେ—ବୃତ୍ତେ)

ଧରାରେ ତୋ ସମ କେ ନଥିବେ ଆନ
ଧଡ଼ସି ଗଲୁ ମୋ କଥା ପରମାଣ ॥ ୦ ॥
ଧନଦ ସମ୍ପତ୍ତି ଆଜ   ଦଶଦ୍ରେ ଦେଲୁ ରେ ଭାବ
ଧନ୍ୟବାଦ ତୋର ପାଶବାର ପଣ ॥ ୧ ॥
ଧିଃ ସେ ନଟକୁଟିଆ   ଧଣବୀ ମଧ୍ୟେ ହିଟିଆ
ଧୀରେ ହସିଥିବେ ଶୁଣି କଥାମାନ ॥ ୨ ॥
ଧବପଣେ ବିମୋହନ   ଧବମୂଳିଆ ମୋହନ
ଧରଧର ବନ୍ଧୁ କେହ୍ନ ନାହିଁ ମୋର, ମାନ ॥ ୩ ॥



Digitized by srujanika@gmail.com

ଧରୁଛୁ ଚୋହର କର ଧୀରେ କର ସେ ନାଗର
ଧରିଥିବା ରୂପଛଟା ବରନନ ॥ ୪ ॥
ଧୂପ ନଇବେଦ୍ୟ ଦେଇ ପୂଜିବ ନାଟରେ ନେଇ
ଧରଣୀରେ ରାଧାକୃଷ୍ଣ ଭକ୍ତେ ରାମ ॥ ୫ ॥

ଲଳିତା—ଆହା ସଖି ! ମୋ କଥା ସତରେ କଣ ସତ ବୋଲି ଭାବିଲୁ ? ସେ ପରା ନନ୍ଦକିଶୋର କହ୍ନାଇ—ତାକୁ ସାନ ମଣିଚୁ ପରା ! ଶ୍ରେଷ୍ଠ ସାପର ବଡ଼ ବିଷଟି !

"ନ"

(ରାଗ—କାମୋଦୀ । ନବ ବିଳାସିମାନେ—ବୃତ୍ତେ)

ମାପମୂଳଆଟିରେ ନଷ୍ଟପୂ ମଣିଲୁକି ॥ ୦ ॥
ନବଦ୍ୟ ସେନ୍ତ୍ର ନନ୍ଦ- ନନ୍ଦନ ପ୍ରେମଛନ୍ଦ
ନଡ଼ିଁଗ୍ଳକୁ କାହିଁକି ଅକାରଣେ
ନଫୁଲବସୁସୀ ରେ ଟାଣୁଛୁ ବଡ଼ଶୀରେ
ମୀନଛଳେ ମକର କ ଭରମେ ॥ ୧ ॥
ନଗିରେ ଶପୂନକୁ ନଭଜୁ ବିଳାସକୁ
ନାଗରେ ଜୃମ୍ଭା ମାଣ ଡ଼ାକୁଅଛୁ
ନ ମିଳାଇ ଆଖିରେ ନରେଖିବା ଦେଖି ରେ
ନଷ୍ଟମୂ କଲୁ ତେଜ ବିଳାସକୁ ॥ ୨ ॥
ନବୀନ ରସଦାମ ନାହିଁକି କଣ୍ଠୁ ଜାଣି
ନନ୍ଦ ନନ୍ଦନ ଯାହା କରେ ବ୍ରଜେ
ନାବାଳକ ନମଣ ନଟଛି ପ୍ରାଣଧନ
ନୂଆ ତା ପ୍ରୀତିରଙ୍ଗ ମୁଁ ସମଜେ ॥ ୩ ॥

Digitized by srujanika@gmail.com

ନହେଉ ବେଶଭୂଷା ନଆଳୀକ ସୁଶ୍ରୂଷା
ନକରୁ ଆଡ଼ରୁଷା ବହୁ ମନେ
ନବେଦନ ଆମ୍ଭର ମନାନୁଯାୟୀ କର
ନନ୍ଦା ନକର ଆଉ ପରକ୍ଷଣେ ॥ ୪ ॥

ମାୟାର ଝଞ୍ଜ ବସ୍ତୁ ନକଲ ପ୍ରେମବଶୁଁ
ନଳନାକ୍ଷୀରେ ନଜକୁ କରଜୁ
ନାଗବଲ୍ଲି ଯମାର ମାଳ ଯମୁନା ମାର
ନକରୁ ବ୍ୟବହାର କ ସମଜୁ ॥ ୫ ॥

ନରୁଟିଆ ନକୁଞ୍ଜ ନଲୟେ ହେଉଁ ସଞ୍ଜ
ନକରବୁକ ଖ୍ରିଷ୍ଟ ମରମରେ
ନେବେ ପଣନ୍ତ ଠାଣି ନଚରକବୁ ଜାଣି
ନପଟ ଜଡ଼ଯାଇ ସରମରେ ॥ ୬ ॥

ନବାନୁରାଗ ପାଇ ଭୁଲି ଯିବୁ ତ ନାହିଁ
ନତ୍ୟ ଅନୁବନ୍ଧନ ହୃଦୟରେ
ନରନ୍ତରରେ ରାମ ନକଲେ କୃଷ୍ଣ ଧ୍ୟାନ
ନପାଏ ନରାନନ୍ଦ କେବେ ଥରେ ॥ ୭ ॥

---

ଶ୍ରୀରାଧା—ସଖି ! ତୋ ହୃଦୟରେ ଏତେ କୂଟ ପୂର ରହିଛି ! ହଁ ! ନର ମାୟା ନାରାୟଣଙ୍କୁ ଅଗୋଚର— ମୁଁ ବା ତୁର କେମିତି ବୁଝିବ ?

Digitized by srujanika@gmail.com

'ପ''

(ରାଗ—ଭୈରବ । ଆଡ଼ତାଳୀ । )

(ପରମାଦ ବଡ଼ ଦୁହ୍ନି—ବୃତ୍ତ)

ତ୍ରିଯୂସନ୍ଧ—ପରମେଷ୍ଠି ନଳାଣଙ୍କୁଁ ଗୋ
ପୂର୍ବ କୂଟ ହୃଦେ ଅଚ୍ଛୁ ରହ୍ନ ଗୋ ॥ ୦ ॥
ପରେତରାଟେ ଯାଚ ଜୀବନ ଦେବାର
ପରକ୍ଷଣେ ପୁଣି ଜୀବନ ବାଞ୍ଛିବାର
ପରତେ ମୋ ନଆସଇ ଏ କପ ବେଭାର
ପ୍ରସଙ୍ଗରେ ଦେଉ କହ୍ନ ଗୋ ॥ ୧ ॥

ପଣପନ୍ଥୀ ହେଲ ଯେବେ ପ୍ରକୃତ ସ୍ନେହ
ପାବକ କରେ ମୋର ଧରାଇ ଦେଇ
ପର୍ବୁରୁକୁ ସ୍ପର୍ଶସୁଖ କ ଭାବ ନେଇ
ଫୁରୁଣାରେ ଦେଖୁ ସନ୍ନ ଗୋ ॥ ୨ ॥

ପ୍ରଳୟ କାଳେ ମୋର ପାଉକ ଆନନ୍ଦ
ପ୍ରବାହ ଜଳେ ନଜେ ଭସାଇ ମୋ ଅଙ୍ଗ
ପୁନରପି ଲେଉଡ଼ୁଅନ୍ତୁ ସଖୀ ଅଙ୍ଗ ସଙ୍ଗ
ପ୍ରସାଦ ମାନସେ ବହ୍ନ ଗୋ ॥ ୩ ॥

ପରଭୃତ ଶାବକ ହୋଇଲେ ବାୟସ
ପୁଣ୍ଡରୀକ ଯେବେ ହେବ ଆଜ ପଦ୍ମବତ
ପ୍ରଭଞ୍ଜନ ହେଲେ ନଜ କାମ୍ୟା ପଶଣତ
କହିବ କାହାକୁ ଯାଇ ଗୋ ॥ ୪ ॥

Digitized by srujanika@gmail.com

ଚପଳ କି ବେଣୁର ଅନୁସୃତା ତଟେ
ପୁରଟ ଦେଖାଇଲୁ ନେଇ ନେତ୍ରପଥେ
ପ୍ରାଣେ ପୀରତି ଖଳ ପାଳଟେ ପାଦପେ
ପ୍ରକାଶେ୍ୟ ସ୍ଵାମ ଭୂଷଣ ଗୋ ॥ ୫ ॥

---

ଲଳିତା—ତୁ ଯାହା କହୁଲେ କହପଛେ ସଖି ! ସାମାନ୍ୟ କଥାରେ ଚହ୍ଲାପଡ଼ି ଶେଷରେ ଏତେ ବଡ଼ ସ୍ନେହ ତୁଟିଯିବ ବୋଲି ଭାବ ନଥିଲି । କି ବିଷମ ବେଣୁରଟରେ ହାତଦେଲି—ଫଳ ବଡ଼ ଖଟ୍ଟୁପ ଦେଖାଗଲାଣି ।

"ଫ"

( ରାଗ—ଚୋଖିଡ଼ପରଜ । ଏକତାଳୀ ।)
(ଫାଟି ପଡ଼ିବାର—ବୃତ୍ତେ)

ଫାଶିକଲେ କର ଏଣିକରେ ବର
ବର୍ଣ୍ଣିମା ମନକୁ ନେଇ
ଫାଟିଲି କପାଳ ବିଷମ ବେଣୁର
ହେଲେହେଁ ସହିବ ଦେହୀ ରେ
ଫଗିନ ! ଫଳତ ହେଲା ଦୁଃସହ
ଫସର ଫାଟିବ ବୋଲି ଏତେକାଳେ
ଜାଣି ନଥିଲି ଆଗ୍ରହ ରେ ॥ ୧ ॥
ଫୁଲକୋଦଣ୍ଡର ଖାଣ୍ଡି କଲି ଘର
ବାଳକ ହେଉ ତା' ତାପେ
ଫାଟକରେ ଜଳ ଡ଼ାଳକି ବିରଳ
ଦେଖିବା ଭାବନ୍ତୁ ଆପେ ରେ

Digitized by srujanika@gmail.com

ସଂଗିନି ! ଫୁଟିଲ ଗଙ୍ଗ ଶିଉଳି
ରଶ୍ମିକରେ ଦଗ୍ଧ ହେଲାପରି ଚନ୍ଦ୍ର
କାମରେ ଯିବୁ ମଣ୍ଡଳି ରେ ॥ ୨ ॥
ଫୁରୁଣା ତୁ ବନ୍ଧୁ କଥା କହୁ କହୁ
ଏତେ ଶ୍ରମ ହେଲ ପଣ୍ଡ
ଫଡ଼କା ଉଡ଼ାଅ ଆରତି ବଢ଼ାଅ
କାମ ଧ୍ୱଜପ୍ରେ ପ୍ରଚଣ୍ଡରେ
ସଂଗିନି ! ଫଳାଶନ ପାଶେ ଧ୍ୱଜେ
କର ମାଇନାରେ ଅଧର ସୁଧାରେ
ଭୃଙ୍ଗ ତା ପୀଉନ୍ତି ନଜେ ରେ ॥ ୩ ॥
ଫାଲ୍‌ଗୁନ ବାସରେ ରକା ରଜନୀରେ
ରସରଙ୍ଗିଆଙ୍କୁ ଧରି
ଫଗୁ ଖେଳାକର ସଖୀ ନା ନଧର
ସବୁ ସେହ୍ନ ଅପହରି ରେ
ସଂଗିନି ! ଫିଟିଲ ମନ ଏଣିକ
ମେଲାଣି ହଅ ରେ ସହ୍ୱ ହରଷରେ
ଚୋହର ସଖିଶ୍ରେଣୀଙ୍କି ॥ ୪ ॥
ଫାଶ ପାନ୍ତି ବାଡ଼ି ବାନ୍ଧିବାକୁ ଆଣି
ବାନ୍ଧନ୍ତୁ ଶୋଭାଙ୍କି ମନେ
ଫଳାଫଳ ଚାରି ଚୋଟେହିଁ ଗୋଚର
ରହିଥିଲୁ ଆବରଣେ ରେ
ସଂଗିନି ! ସ୍ଫୁରୁଛି ବାମ ନୟନ
ପ୍ରକାଶ ହେଉ ତୋ ଗାଢ଼ ପ୍ରେମଯାକ
ଭାବ ଗୀତେ ଭଣେ ରାମ ରେ ॥ ୫ ॥

——0——

Digitized by srujanika@gmail.com

ଶ୍ରୀରାଧା—ମନ୍ଦ ! ସ୍ପଷ୍ଟ ବୁଦ୍ଧି ମୋର—ନାନାକଥା କହି ତୋ ମନରେ କଷ୍ଟ ଦେଇଛି । ମୋ ଋଣ—ତୁ କିଛି ଅଭିମାନ କରନା—ସବୁ ଭୁଲିଯା ।

"ବ"

(ରାଗ—ସାବେରୀ । ଆଠତାଳୀ । )

(ବଦନକ୍ଷରେ—ବୃତ୍ତେ)

ବିରହବାଗରେ, ବଞ୍ଚିବି ମୁଁ କେସନେ ପ୍ରିୟ ସଜନୀ କହ ॥୦॥

ବଲ୍ଲବୀରେ ଗାଅ ଶ୍ୟାମଗୀତ ''

ବଦେହର ଅଛି କି କି ମିତ

ବିଚକ୍ଷଣ କରି କହ ଖିତ

ବାଥ୍ ଉଗାଳିଛି ସବୁ ଦିଅ ପାଶୋରି ରେ ॥ ୧ ॥

ବୁଦ୍ଧି ଅଳ୍ପ ବୋଲି ନାନା କଥା

ବକ୍ଷେ ଦେଇଛି ରେ ସନ୍ଧି ବ୍ୟଥା

ବହୁ ବୋଷ କବା ଭାବ ମଥା

ବାତଙ୍ଗୀର ସମ ଅଙ୍ଗ ନପାରେ ଚଳି ରେ ॥ ୨ ॥

ବିପ୍ରଳାପ ନକର ମୋ ଋଣ

ବନ୍ଧୁ ବିନେ ନାହିଁ କେହି ଆନ

ବନ୍ଧୁ ନାମ ଧରି ଖାର ଠାଣ

ବଧିରେ ତ ଜୀବ ଆଣେ ଶରଣଗଲି ରେ ॥ ୩ ॥

ବାମ ହେଲଣି ତମାଳମାଳ

ବାରିଜାକ୍ଷି ବାଛି ପୁଷ୍ପସାର

Digitized by srujanika@gmail.com

ବାସବ ଭୂଷିତ ସମହାର
ବଶୀରଦ ଗୁନ୍ଥୁ ମନ ଭଙ୍ଗିକ ବାର ରେ ॥ ୪ ॥
ବହୁତ ମୁଁ କହିବ ବା କସ
ବଂଶୀଧର ପାଇଁ ଲଳାୟିତ
ବଶେଷେ ହୋଇଛୁ ପ୍ରାଣମିତ
ରାମ ରସେ ଶ୍ୟାମସୁନ୍ଦରଙ୍କୁ ସ୍ମର ରେ ॥ ୫ ॥

---

ଲଳିତା—ସଖି ! ଦେଖିଲୁ—ନିକୁଞ୍ଜ ବନର ଶ୍ୟାମଳ ଶୋଭା ଦୂରରୁ କେମିତି ଦିଶୁଛି । ସେହି ଶ୍ୟାମାୟ୍ମାନ ତରୁଲତାମୟ ପ୍ରଦେଶରେ ଶ୍ୟାମସୁନ୍ଦର ବିହାର କରନ୍ତି । ଯଦି ଦେଖିବାକୁ ମନ ଥାଏ ଥରେ ମୋ ସଙ୍ଗେ ଆସ, ସେହି ବଶ୍ୱବିମୋହନ ରୂପଛଟା ଦେଖାଇଦେବି । ଅ ପିଲ—

"ଭ"

(ରାଗ—କେଦାରଗୌଡ଼ା । ତାଳ ଝିପୁଟା ।)

(ଭଙ୍ଗି ଋତୁଁ—ବୃତ୍ତେ)

ଭୁଲି ଯାହା,ଭୂଷାକଲୁ ଭୁଜଙ୍ଗ ଭାନୁଜା କସ ମଣି ରେ ॥୦॥
ଭୃଙ୍ଗ ସୁମନସାଥି, ଭୁଜଙ୍ଗଙ୍କୁ କେ ରଖି, ଭାବ ରେ
ଭାନୁଜାତଟ-ବଳ-ବାସରେ,
ଭରମ ବରମରେ ସେ ଭମେ

Digitized by srujanika@gmail.com

ଭର କରେ ତାକୁ ଧରୁ କେଉଁ କାରଣେ,
ଲଳିତଲୀନାରେ !
(ପଦ) ଭୋଗିଲୁ ପାହା ଫଳ, ମନେ ମନେ ସୁମର,
ଦେଖ ନକୁଞ୍ଜ ସ୍ଥଳ, ବହେ ମଳୟାନିଳ,
ପ୍ରକୃତ ମନୋହର, ସଖି ରେ
ଗାଅଇ ପରଭୃତ ବକୁଳ ଶାଖାପର ରେ ॥ ୧ ॥
ଧନୁ ଧନୁ ନପଡ଼େ, ନକୁଞ୍ଜ କାନନରେ, ବାସରେ
ଘର ଭୂଷନ ଗ୍ରୀଷମ ସମୟରେ,
ଭଲେ ତ ଚନ୍ଦ୍ର ଚନ୍ଦନ ତୋ ଅଙ୍ଗ
ଭର ମାଗିଛୁ ଆଜ ସଜନୀ ସମାଜ
ଲଳିତଲୀନାରେ !
(ପଦ) ଭୁଜଙ୍ଗ ସଙ୍ଗେ ରମି, • ବରଦ ତାପ ଧନ,
ମୁଞ୍ଜାଅରେ ଏକ୍ଷଣି, ଏ ରଜନୀ ସଜନୀ
ଶ୍ରେଣୀଙ୍କି ତୁ ଭଜନୀ, ସଖି ରେ
ଭଜ ସେ କାମ ତାପ ହାରକ ମୂରତକ ରେ ॥ ୨ ॥
ଧର ତ ତୋ ଉରଜ, ଷିତହେର ବରଜ, ପାଶରେ
ପ୍ରଫୁଲ୍ଲ ମଲ୍ଲିକାହାସ ଅଧରେ,
ଭବ ବହୁଳେ ନୟନ ନଗ୍ନଇ
ନେବୁ ରପି ତାର ଶତ୍ରୁକୁ ରସାଇ,
ଲଳିତଲୀନାରେ !
(ପଦ) ଭୂରେ ମୀନକେତନ, ଚକ୍ରବର୍ତ୍ତୀ ସମାନ,
ଭଙ୍ଗୀ ଗୃଭୁଙ୍ଗ ପଣ ଦେବ ସାର ମୋହନ,



Digitized by srujanika@gmail.com

ସୁରସେ ଆଲିଙ୍ଗନ, ସଦ୍ଭ ରେ
ଦେବ ସେ ରଣରଣ-ରଭାନ୍ତେ ବହୁକ୍ଷଣରେ ॥ ୩ ॥
ଦୃଷଇ ଶ୍ୟାମମୂର୍ତ୍ତି, ଚାଇ ବାଣୀ–ବଭୂତ, ଶିରରେ
ଯାହା ମୁଁ ଭାବେ ପାଶେ ରସନାଧିରେ
ଭ୍ରାନ୍ତବଶେ ସାତ୍ତ୍ୱିକ ଲକ୍ଷଣ,
ଭେଟିଲେ ମୋହନେ ନକର ପ୍ରଦର୍ଶନ,
ଖିଲ୍ଲିଲାରେ !
(ପଢ଼) ଭ୍ରେଗିମା ପଞ୍ଚବାଣ, ଦେନ ସେ ପଞ୍ଚବାଣ,
ଦହୁ ବିରହୀ ପ୍ରାଣ, ରହୁ କାରିତମାନ,
ଦେଖି ମାର ମାରଣ ସଦ୍ଭ ରେ
କୃତାର୍ଥ ହେବ ସବ ଗୋପିନୀ ଅବୟବ ରେ ॥ ୪ ॥

—:o:—

(ଶ୍ରୀରାଧା କୃଷ୍ଣଙ୍କ ଅପୂର୍ବ ମିଳନ ଦୃଶ୍ୟ ଦେଖି ଲଳିତାଦି ଗୋପିନୀମାନଙ୍କର ନୟନ ସାର୍ଥକ ହେଲା । ସମସ୍ତେ ସେହି ଯୁଗଳମୂର୍ତ୍ତି ଚରଣତଳେ ସାଷ୍ଟାଙ୍ଗ ପ୍ରଣିପାତ କଲେ)

"ମ"

(ରାଗ—ମଙ୍ଗୁଆ । ତାଳ—ହିପୁଟା ।)

(ମଧୁରେ ମନ୍ଦମନ୍ଦ—ନୃତ୍ୟେ)

ମଞ୍ଜୁଳ କୁଞ୍ଜସ୍ଥଳ, ପୁରୁଷ ସଙ୍ଗମର, ଭାବ ହେଲା ସଞ୍ଚାର
ବଲ୍ଲଭୀ ମନରେ

Digitized by srujanika@gmail.com

ମିଳିଲେ ଆର, କୁଞ୍ଜ ପାଶର, ତରଳାକ୍ଷୀ ମରେ
ମନସିଜର, ବ୍ୟାଧି ପ୍ରଖର, ଅନ୍ତରେ ଡାର ଘାରେ ।
ମନାସିଲି ସେ ବାନ୍ଧବର,
ମିଳନ ମଧୁଶଯ୍ୟା ମାତର,
ମୋହନକାରିଣୀ, ମାନସ ଜାଣି,
ସଜନୀ ହରଷରେ ॥ ପଦ ॥

ମାଧବ ମାସେ ମାଧବ ପାଶେ
ଉପନ୍ନ କଲେ ନେଇଁ ରାଧିକା
ମୋହନ ବିମୋହନ ମୂରତି ଧରି—
ମନ୍ଦ ହାସରେ ମଣ୍ଡନ ଭରେ
ବସିଥିଲେକ ସୁନ୍ଦରୀ
ମାଧୁରୀ ହେରି, ଭାବରେ ଜଡ଼ି,
ମିଶିବା ପାଇଁ ବହ୍ନିରୀ
ମନାଇ କହିଲେ ସୁଧା ଭାଷ ।
ମୃଦୁଳ ହାସ ଅଧର ପ୍ରାନ୍ତ
ରଞ୍ଜାଇଦେଲା ଭାବଭଙ୍ଗି ଭ୍ରୂଭଙ୍ଗୀ କାମକଣ୍ଠୀ ॥୧॥

ମନ୍ମଥବର ମୋଦେ ଅପାର
ମାରିଲେ ବକ୍ଷେ କୁସୁମଶର
ମିଥୁନ ମିଳନେ ଖୋଜ ଅବସର
ମୃଦୁ ଅଙ୍ଗୁଳି, କରରେ ଧରି,
ଦେଖିଲେ ରାମାବର

Digitized by srujanika@gmail.com

ମଧୁପ ମଧୁ ଚମ୍ପିଲ ବଧୂ
ସୁମନ ଗଣ୍ଡସ୍ଥଳ
ମଦନ ଦେଖି ସେ ମୋହମାନଙ୍କି
ମଣ୍ଡିଲେ ଗଣ୍ଡେ ଚୂମ୍ବନସାର
ବକ୍ଷେ କନକଲତା ମୁଦ ନୟନ ତଳେ ଚଞ୍ଚଳ ॥୨॥

ମାରମନ୍ତରେ, ଧାର ପାଶରେ
ପ୍ରୀତି ସଞ୍ଜୀବନୀ ମନ୍ତ୍ରବରେ,
ମୋହନୀଙ୍କ ପ୍ରାଣେ ଚେତନା ତ ପ୍ରସରେ
ମଜ୍ଜାଇ ମନ ହଜାଇ ଜ୍ଞାନ
ରତିରଣେ ବଦ୍ଧରେ
ମୋତିହାରିଣୀ କଟି ଭୂଷିଣୀ
ନୀବରେ କର ଭରେ
ମସୃଣବକ୍ଷ କୁଚ ସମ୍ଭାର
ରଖିଛୁ ରାମା ପୀୟୂଷସାର
ମଦନ୍ତୁ ଲୁଟି, ଧୃତ ଲମ୍ପଟୀ
କରେ ଧରେ ପୟୋଧର ॥ ୩ ॥

ମାନିନୀ ମାନ ରହିଲା ଦୂରେ
'ମାରମାର' ବୋଲି ସେ ନନ୍ଦୁରେ
ଚୁଂକାର ଗୀତ ଶୁଭଇ ସଦା କାନେ
ମିଳନେ ମାର ବନ୍ଧିଲା ଘାର
ରତାନ୍ତେ ସେହ୍ୱ ସ୍ଥାନେ ।

Digitized by srujanika@gmail.com

ମନମୋହନ ଛବି ସରସ
ପାଇଲେ ଦେଖି ବାମା ଅନୁବନ୍ଧନେ
ମୁଗ୍ଧିଲ ସଖି ବଲ୍ଲଭ ଦେଖି
ଚେଳମୁଖେ ରଖି ହାସକ୍ଷଣେ,
ଏ଼ଂ ରାମମୂର୍ତ୍ତି ଯୁଗଳ ମୂର୍ତ୍ତି
ଭଜଇ ଅନୁକ୍ଷଣେ ॥ ୪ ॥

—ଃ୦ଃ—

ଶ୍ରୀକୃଷ୍ଣ—ବହୁଦିନର ଆଶା ଆଜ ଚରିତାର୍ଥ ହୋଇଛି ରାଧେ ! ଏହି ମିଳନ ମଧୁ ଲଗନକୁ ମୁଁ ଯେ କେତେ ଦିନ ଧରି ପ୍ରତୀକ୍ଷା କରି ବସିଥିଲି । କେତେ ହା ହତାଶ, କେତେ ଦୀର୍ଘଶ୍ୱାସ ମଧ୍ୟଦେଇ ମୋର ପ୍ରେମ-ଲାଳସା ଗତି କରିଛି— — —ଆଜ ତୁମେ ଅନ୍ତରର ସକଳ ଦୁଃଖାଗ୍ନି ପ୍ରଶମିତ କରି ମୋର ବାହୁ-ବନ୍ଧନରେ ଧରା ଦେଇଛ— ସେଥିପାଇଁ ମୁଁ ନିଜକୁ ଧନ୍ୟ ମନେ କରୁଛି ।

"ଯ"

(ରାଗ—ମୁଖାରି । ଆଡ଼ତାଳ । )

(ଯୋଷାବରରେ—ବୃତ୍ତେ)

ଯୋଗୀବରରେ,
ଯୋଗଟଳା ମେନକା ନାକର ରେ ॥
ଯାମିନୀ ମଣ୍ଡନା ବାରଣ-ଗମନା
ଚରଣେ ମୁଁ ପଶିକର ରେ ॥ ୦ ॥

Digitized by srujanika@gmail.com

ଯୁବା ଜନ ମନ     ଧର ବୁଡ଼ାପଣ
ଯାଇଛ ନାଗରୀବର ରେ
ଯାଚକ କରାଇ     ବିବେକ ଲୁଟାଇ
ଦେଲୁ , ଯାରେ ବକ୍ଷେ ସୁର ରେ ॥ ୧ ॥

ଯୋଗାରୂଢ଼ ପଦେ     ଜଣାଇବ ପଦେ
ହେବାକୁ ତୋ ଜୀବେଶ୍ୱର ରେ
ଯାଗ ବ୍ରତାଚାର     କାନନେ ବିହାର
ଯିବ ସଙ୍ଗେ ନିରନ୍ତର ରେ ॥ ୨ ॥

ଯୁଗେ ଯୁଗେ ରହୁ     ଏହି ଅନୁଗ୍ରହୁ
ମିଳନ ସ୍ଫୂର୍ତ୍ତି ତୋହର ରେ
ଯାହାଲାଗି ନିତ୍ୟ     ଭକ୍ତ ଯାଏ ହିତ
ବିତ୍ତ ସେ ମୋ ନିଧିସାର ରେ ॥ ୩ ॥

ଯୁଟିଲୁ ମୋ ଭାଲେ     ନଭୁଲିବ କାଳେ
ଅନ୍ତରୁ କର ଅନ୍ତର ରେ
ଯୁଗଭୁଜାମାରେ     ମାନସ ମନ୍ଦରେ
ରଚ ରାସକ୍ରୀଡ଼ାବର ରେ ॥ ୪ ॥

ଯାମ ହେଲା ଶେଷ     ଉଇଁବେ ଦିନେଶ
ପସ୍ୱରୀ ନଭେ ସୁନ୍ଦର ରେ
ଯାବକ ବରନ     କର ସନ୍ଦର୍ଶନ
ରାମ ଧ୍ୟାୟେ ରମାବର ରେ ॥ ୫ ॥

—୪୦୪—

Digitized by srujanika@gmail.com

ଲଳିତା—ଆହା ମରିଯାଏ ମ ! ରାତ୍ର ପାହିଗଲାଣି ! ବ୍ରଜପୁରରେ ଏସବୁ ରାଷ୍ଟ୍ର ହେଲେ କଣ ଭଲ ହେବ ?

"ର"

(ରାଗ—କେଦାର । ଆଡ଼ତାଳି । )

(ରସାଳସା ରେ—ବୃତ୍ତେ)

ରସନଧି ରେ

ରଣରଣ ରଚଣେ ଗଲୁ ମଞ୍ଜିରେ ॥ ୦ ॥

ରଖିଲୁ ଗୌରବ କାମ ବଧି ରେ
ରହୁ କାହିଁ ଯଶସ୍ଥାନେ ଦବ ରେ ॥ ୧ ॥

ରମଣୀ ବିବେକ ଗଲା ହଜ ରେ
ରାଧି ହେଲା ଶେଷ ଲେଖା ଭଜି ରେ ॥ ୨ ॥

ରଚେ ପରାଚୀ ରଙ୍ଗିନ ଛବିରେ
ରଥେ ହେବେ ବୋଲି ବିଜେ ରବି ରେ ॥୩॥

ରସିକଶେଖର କନ୍ତ ବସି ରେ
ରଚୁଅଛୁ କବା ପ୍ରେମଗୀତ ରେ ॥ ୪ ॥

ରସିବାଯଣ ଥାଉ ସମ୍ପ୍ରତି ରେ
ରସାରେ କେ ଦେଲା ମନ୍ଦବୁଦ୍ଧି ରେ ॥ ୫ ॥

ରାମମୂର୍ତ୍ତି ଭଣେ କ ଅବଧିରେ
ରସିକା ଲକ୍ଷ୍ମୀମଭୂତା ନିଧି ରେ ॥ ୬ ॥

—ଃ୦ଃ—

Digitized by srujanika@gmail.com

ଶ୍ରୀରାଧା—ମୋହନ ! ହେଇ ଶୁଣ ଲଳିତା ଡାକୁଛି ।
ମୋର ଅନୁନୟ ରଖି ବେଗେ ଗ୍ରୁଡ଼ିଦିଅ ମୋତେ ।
ସମସ୍ତେ ଜାଣିଲେ ବଡ଼ ପ୍ରମାଦ ପଡ଼ିବ । ଗ୍ରୁଡ଼—

"ଲ"

(ରାଗ—ଅବକାଶ । ତ୍ରିପୁଟା ପଦ୍ମପଠ । ଅଡ଼ତାଳୀ)

ଲଳିତାର ହେ, ଲକ୍ଷ୍ୟକର କଣ୍ଠସ୍ୱର
ଲୁଚିଛି ନିକୁଞ୍ଜ ଦୁଆରେ ହରକତ ନକର ॥ ୦ ॥

ଲଞ୍ଜୁଆ ଶେଖର କୁଞ୍ଜବିହାରୀ
ଲଜ୍ଜା ନବାର ମୋ ଶୁଣି ଗୁହାରି
ଲୁଟିନେଲ ରଙ୍ଗେ ମାନମହତ୍ତ୍ୱ
ଲୀଳାବିହାରୀ କି ବଧି ସଙ୍ଗତ ॥ ୧ ॥

ଲୋତଡ଼େ ନବବନ୍ଧ ଦ୍ୱିଅନ୍ତୁ ଆଡ଼
ଲେଶ ହେଲେ ଥରେ ପଣନ୍ତ ଗ୍ରୁଡ଼
ଲାବଣ୍ୟମୟୂ ଏ କୁଚକୁମ୍ଭରେ
ଲୁଗ୍ଗିଇବ କହ କେଉଁ ଦମ୍ଭରେ ॥ ୨ ॥

ଲଭ ହେଲ ଶେଷ ନିନ୍ଦାସମ୍ମାନ
ଲଭିଛି ଭଲେ ଲକ୍ଷା ଚିହ୍ନମାନ
ଲୋଖି ପୀରତିଆ ବ୍ରଜବଜାରେ
ଲପ୍ଟ କରିବେ ତ ଲୋକ ହଜାରେ ॥ ୩ ॥

ଲେପିଦିଅ ଚନ୍ଦ୍ରଚନ୍ଦନ ଅଙ୍ଗେ
ଲଙ୍ଘ ନିଧୁବନ କଥା ପ୍ରସଙ୍ଗେ ।

Digitized by srujanika@gmail.com

ମ୍ଳେଚ୍ଛ ମାରିବ ସେ କରି ଚହଳ
ଲଗୁଡ଼ କରେ ଆସିବେ ଗୋପାଳ ॥୪॥
ଲମ୍ଫ ଦେଇ ପୀରତି ସାଗରରେ
ଲୁଚକାଳି ଖେଳ ସ୍ୱାଦ ଫଗରେ
ଲେଜ ସମ ଜ୍ଞାନ ବିବେକ ଦ୍ୱଡ଼
ରାମ ଲୀଳେ ଛେକ କୁଞ୍ଜ ଦଉଡ଼ ॥ ୫ ॥

—:o:—

ସଖିମାନେ—ରାଧେ ! ଥରେ ମୁକୁରରେ ନିଜ ମୁଖର ଶୋଭା ଦେଖିଲ—ମୁଖଚନ୍ଦ୍ରକୁ କେଉଁ ରାହୁ ଗ୍ରାସିଥିଲା କେଜାଣି, କଳଙ୍କ ଆଦ୍ୱର ଗ୍ଲାଡ଼ନାହିଁ ।

"ବ"

(ରାଗ—ସାବେରୀ । ଆଠତାଳୀ । )
(ବିଚିତ୍ର ବେଶ—ବୃତ୍ତେ)

ବିଦେହ ସୁଖ ଦାୟିନି ରେ ବାଳା ବିଶେଷ କେଳିକୁଶଳା
ବଡ଼ଭ ବିରଜ ନିକୁଞ୍ଜେ ବିହରୁ ବକ୍ଷେ କାହିଁ ମୋତିମାଳା
ବନଫୁଲ ମାଳା ରେ
ବାରିଜାକ୍ଷି ଶୋଭୁଛି ତ ଗଳାରେ ॥ ୧ ।
ବିଦ୍ୟୁବରନାରେ ମୁକୁରେ ଅନା ଆନନ ଦିଶେ କପରି
ବିକୃତ କରିଛି ପ୍ରଖର ନଖରେ ଗିରିରଞ୍ଜି ରତିପତି ରେ
ବିଧୁମୁଖି ଏକ ରେ
ବିମ୍ବ ଅଧରେ ଦନ୍ତଘାତ କାରେ ॥ ୨ ॥



Digitized by srujanika@gmail.com

ବହାର ସମସ୍ତ ଶ୍ରମରେ ସଖି ସ୍ଫଟିକ୍କଳ ଅଙ୍ଗେ ଘର୍ମ
ବାହାରୁଛି ରକ୍ତ ଗଣ୍ଡଦେଶୁଁ ପୁଣି ଫିଟାଇ କନ୍ଧ ମରମ ରେ
ବସ୍ତ୍ରବସ୍ତ୍ରରେ ସରମ
ନଥିଲା ବୋଲିକ ବଦନେ ଭ୍ରମ ରେ ॥ ୩ ॥
ବଧୂଗ୍ରାସୀ ବଧୂନୁଜରେ ସଖି କଣ୍ଠଲଗ୍ନ ମୁକତ
ବଶିଖଗ୍ରହାସ୍ତ୍ର କାମଦେବତାକ ହୋଇଗଲା ଅନ୍ତର୍ହିତ
ବନ୍ଧୁ ସନମତରେ
ବହ୍ଲଭ ଉରେ ରତିକାନ୍ତ ରେ ॥ ୪ ॥
ବଜପୂର୍ଣ୍ଣିମା ହେଲୁ ରଣେ ରେ ବାଳା ବାହୁନ ଏ ଗୀତେ ଭଣେ
ବାଳମନ୍ତ ସେହ୍ନ ସ୍ତମମୂର୍ତ୍ତି ରସେ ଭଜେ ସମ୍ମିଳନ କ୍ଷଣେ
ବଣେଷେ କ ଜଣେ ରେ
ବାରଜାକ୍ଷି ନପଡ଼ିଲୁ ମନେ ରେ ॥ ୫ ॥

—:o:—

ମଧୁମଙ୍ଗଳ—ଓହୋ ସଖା ! ତୁମେ ଏଠି ? ଆଜ ମୋର ବଡ଼ ସୁପ୍ରଭାତ, ଆସୁ ଆସୁ ଦେଖା ପାଇଗଲି । ଏ କଣ—ଶ୍ୱାସପ୍ରଶ୍ୱାସ ଏପରି ଖରତର ବହୁଛି କାହିଁକି ? କେଉଁଠି କଣ ପ୍ରମାଦ ପଡ଼ିଲା ସଖା ?

"ଣ"

(ରାଗ—ନଳିନୀଗୌଡ଼ା । ତାଳ—ଝୁଲା । )

(ଶ୍ୟାମ ଶିଖଣ୍ଡ—ବୃତ୍ତେ)

ଶମ୍ପାଗୋପ୍ତା ବହାର
ଶିଖରାଧାସ୍ତ ଅନୁକମ୍ପା ଭକାସ୍ତ ॥ ୦ ॥

Digitized by srujanika@gmail.com

ଶରଧା ହେଲା ପଦେ ଦେଉଛୁ କଣ୍ଠ
ଶ୍ରୁତିରେ ଯେବେ ଲେଶ ଗ୍ରେଷ ନବଣ୍ଟ ॥ ୧ ॥
ଶ୍ୱାସ ପ୍ରଖର ବହେ ମଳିନ ମୁଖ
ଶେଷ ସୁରତ-ରଣେ ହେଲୁକ ଦୁଃଖ ॥ ୨ ॥
ଶଚି ସମାନ ଶୋଭି ବାସବ ଅଙ୍କେ
ଶୋହିଲ୍ଲ ରମା ନଗିରେକ ନିଃଶଙ୍କେ ॥ ୩ ॥
ଶ୍ରମ ଶୃଙ୍ଗାର ରସେ ଜାତ ଅପାର
ଶିରେ ସିନ୍ଦୂର ବିନ୍ଦୁ ଏ କ ବେହାର ॥ ୪ ॥
ଶ୍ରୀପତି-ସୁତସନ୍ଧ ସୁମନ-ଶର
ଶିଖିଷାଙ୍ଗୀ ଦଳନେ ହେଲା ଅଧୀର ॥ ୫ ॥
ଶାଶୁ ନଣନ୍ଦ ତାର ଅଛନ୍ତି ଘରେ
ଶୁଣିବେ ଯଦି ଯିବ ମହତ୍ତ୍ୱ ଖରେ ॥ ୬ ॥
ଶିଖିଚୂଳ ମଣ୍ଡନ ନିନ୍ଦା ହୋଇବ
ଶରଣାଧୀନ ରମେ କେହୁ ରଖିବ ॥ ୭ ॥

—:o:—

ଶ୍ରୀକୃଷ୍ଣ—ସଖା ! ପ୍ରକୃତରେ ତୁମକୁ କହୁ ନକହି ବଡ଼ ଅପରାଧ କରିଛୁ । ଦୟାକରି ମୋତେ ଏପରି ଭାବେ ଛଳାଇ କହନାହିଁ—ହାତ ବାଧୁଛୁ ।

"ସ୍ୱ"

(ରାଗ—ମୁଖାରୀ । ତାଳ—ତ୍ରିପୁଟା)

(ସପନଟି ମୋର ରେ—ବୃତ୍ତେ)

ସଖା ସହୋଦର ରେ ! ସ୍ୱଦୟା ତୁ କର ରେ

Digitized by srujanika@gmail.com

ସରମ ଲାଗେ ମୋ ମରମ ଲୁଚିନେଇ
ଛଳାଇ କହୁ କେତେଥର—
ଜୀବନେ ଜୀବଛଦା ତୁହ୍ମକ ପ୍ରାଣସଖା
ଯା ପାଖେ ଅନ୍ତର ଖୋଲି ମୁଁ କହେ ବଚନ । ପଦ ।
ସେନେହ ବଶରେ ଧର, ସଜମୁହଁ ଫରଫର
ସକାନ୍ତୁ ଆଉ ନକର, ସରିଗଲାଣି ଏଥର ॥୧।
ସୁନ୍ଦରୀ ସୁମନମଣ୍ଡା, ସଞ୍ଜେ କୁଞ୍ଜେ ଗଣ୍ଡାଗଣ୍ଡା
ସାଫୁଂ ସମୀରଣ ସେହ୍ନ, ସୁମନେ ଯାଆନ୍ତୁ ତେଜ ॥୨॥
ସମସ୍ତ ବିଷୟମାନ, ସଖୀ କର ଅନୁମାନ
ସ୍ୱାଦୁ ଚାଖି ରହୁ ଧୀରେ, ସ୍ନେହର ଏ କ ଖାନ୍ତ ରେ ॥୩॥
ସବୁ ବଡ଼ ପଣ ସାରୁ, ସ୍ନେହାଧୀନେ ପରିପାନ୍ତୁ
ସବୁରି ହେଲେ ଗୋଚର, ସମ୍ମାନ ଯିବ ମୋହର ॥୪॥
ସାଧୁଜନଙ୍କ ବେଭାର, ସମ୍ମତ ହୋଇ ନସ୍ତାର
ସଜଳ ନୟନ୍ନ ଜନେ, କରନ୍ତୁ ସେ ଅନୁକ୍ଷଣେ ॥୫॥
ସବଳ ହୋଇ ଦୁର୍ବଳେ, ସରୋଷେ ପୀଡ଼ୁ ଦଣ୍ଡରେ
ସାଜନ୍ତି କବା ସୁନ୍ଦର, ସୋହାଗ ପଣ ତୋହର ॥୬॥
ସୁଖରାଶି ଅପ୍ରମିତ, ସୁଲଗ୍ନେ ପାଇଲ ମିତ
ସମ୍ପୂର୍ଣ୍ଣ ହେଲ ଆନନ୍ଦେ, ସରସେ ସେ ରାମ ବନ୍ଦେ ॥୭॥

---

ସଖିମାନେ---(ମହୋଲ୍ଲାସରେ ରାସନର୍ତ୍ତନ ଆରମ୍ଭ କରି
ଗାଇବାକୁ ଲାଗିଲେ)

Digitized by srujanika@gmail.com

"ଷ"

(ରାଗ—ମୋହନ । ଏକତାଳୀ । )

(ଷଟ୍‌ପଦ ନୀଳ କେଶା—ବୃତ୍ତେ)

ଷଡ଼ମୁଖ-ବାହନର ଚୂଳ ଧାରିଆକୁ
ସଂସାରେ ନାହାଁନ୍ତି କେହୁ ଉପମା ଦେବାକୁ
ସଦାଶିବମସ୍ତ ନାମ
ସୁମରିଲେ ଏ ଜୀବନ ଭଜଇ ନିର୍ବାଣ ॥ ୧ ॥
ସାଜନ୍ତୁ ନିକୁଞ୍ଜବନ ସୁରମ୍ୟ ସୁମନେ
ଷଟ୍‌ପଦ ଖେଳାକରେ ମଧୁ ଗୁଞ୍ଜରଣେ
ଶୁଭେ ଦୂରେ ବଂଶୀସ୍ୱନ
ସଦା ଏହ୍ନ ସ୍ଥଳୀ କାମୀ କାମିନୀ-ପାବନ ॥ ୨ ॥
ସ୍ନିଗ୍ଧ ଆନନ୍ଦ ଅମିୟ ବୋଳିହୁଏ ନେତ୍ରେ
ସେବ ଶୋଭାକରରେ ପୂର୍ତ୍ତି କର ମନୋରଥେ
ସୁକୃତରୁ ତୋର ସଙ୍ଗ
ସଙ୍ଗୀ ହେଲେ ବୃନ୍ଦାବନ ବିହାରୀ ମାଧୋଇ ॥୩॥
ସମୁଦ୍ରେ ଲହରୀ ଯଥା କରଇ ନର୍ତ୍ତନ
ସର୍ବକ୍ଷଣେ ବହେ ତଥା ମଳୟ ପବନ
ସିଦ୍ଧ ବାସନା ଏଣିକ
ସୁମନା ମନମୋହନା ରାଧିକେଗୋ ତେଣିକ ॥୪॥
ସେ ରୂପ ଦର୍ଶନେ ଯିନା ଆନନ୍ଦ ଆମ୍ଭର
ଶଙ୍କର ପାତକ ଯିବ ପୂଜ ବଂଶୀଧର

Digitized by srujanika@gmail.com

ଶାନ୍ତି ବିରାଜ୍ ମଝିରେ
ଶେଷ ପଦେ ଭଣେ ରାମ ମୋ ମନ ତହିଁରେ ॥୫॥

---

(ଶ୍ରୀକୃଷ୍ଣଙ୍କୁ ଦେଖି ସଖିମାନେ ଶ୍ରୀରାଧାଙ୍କୁ କହିଲେ)

ସଖିମାନେ—ବ୍ରଜରାଜ ସୁକୁମାର କୁମାର ଲାବଣ୍ୟଛଟା ଦେଖିଲଣି ? ଚାଲ, ପ୍ରେମ ଉପଚାରମାନ ଧରି ତାଙ୍କ କଞ୍ଜପଦତଳେ ଉପହାର ଦେବା ।

"ହ"

(ରାଗ—ଗୌଡ଼ୀ । ତାଳ—ଝୁଲା ।)

(ହରି ଆମ୍ଭର—ବୃତ୍ତେ)

ହଟିଆ ଶେଖର ଚାହିଁ ଶାବସଙ୍ଗୀ— (ପଦ)

ହଜିଯିବ ଦମ୍ଭ ଧୃତ ଦେଖି ଢନ ଭଙ୍ଗି ଗୋ
ବିଶ୍ୱରଣୀ-ସୁଷମା-ସମ୍ପତ୍ତି ଗୋ ॥ ୧ ॥
ହଠାପକା ବେଣୁଧର କ ଅଛୁ ସମ୍ବାଦ ଗୋ
ହେଲେ ମାରଲେ ମାର ତା ଲାଗି ଗୋ ॥ ୨ ॥
ହେଜ ପ୍ରେମ ଉପଚାର ରହିବା କେଉଁଠି ଗୋ
ବକ୍ଷାସନ ଖୋଲି ଧର ଜଗି ଗୋ ॥ ୩ ॥
ହସି ହସି ପ୍ରେମରାଜା ଆସନେ ବିରାଜ ଗୋ
ପ୍ରେମ ଭିକ୍ଷା ନିଶ୍ଚେ ଦେବେ ମାଗି ଗୋ ॥ ୪ ॥
ହାସ୍ୟଛବି ଅଙ୍ଗଶିରୀ ଦେଖିବା ଯୁବତୀ ଗୋ
ତାଙ୍କ ବିନା ନାହିଁ ଆନ ଗତି ଗୋ ॥ ୫ ॥

Digitized by srujanika@gmail.com

ହରଣୀ-ନେହା ତୋଲାଗି ଏ ଲୀଳା ସମ୍ପାଦ ଗୋ
ହରଷେ ରଚଇ ରାମମୂର୍ତ୍ତି ଗୋ ॥ ୬ ॥

—:o:—

ଉପସଂହରଣିକା---ଯେଉଁ କରୁଣାମୟୀଙ୍କ ବରାଭୟରେ ଏହି ରଚନା ସମ୍ପୂର୍ଣ୍ଣ କଲି, ସେହି କ୍ଷମାସିନ୍ଧୁ ବନ୍ଦ୍ୟ-ମାନ କୃପାବାରି ଦେଇ ସକଳ ଦୋଷ ମାର୍ଜ୍ଜନା କରିବେ ବୋଲି ଶରଣ ପଶୁଛୁ ।

"କ୍ଷ" :

(ରାଗ—କେଦାର । ଆଦିତାଳ ।)

(କ୍ଷମାନୁକମ୍ପା ଧର—ବୃତ୍ତେ)

କ୍ଷିତଭବହରଣ କ୍ଷମାସିନ୍ଧୁ ଇନ୍ଦୁମୁଖ
ବୃନ୍ଦୁରସାପାଳକ ଶିଖିଚନ୍ଦ୍ରମଣ୍ଡନ ହେ ॥ ୦ ॥

କ୍ଷିପ୍ରଗତି ଧରି ଗଜେନ୍ଦ୍ର ନିସ୍ତାରଣ ହେ
କଲି କଲୁଷ ବିଧ୍ୱଂସକାନ୍ତି ଚନ୍ଦ୍ରାନନ ହେ
ହରି କମ୍ବୁ ଧାରଣ, ମୂରତି ବିମୋହନ,
ଜଗଜ୍ଜନ ପାଳନ, ଜଳଜ ଯା' ଆସନ
ତା ମାନସ ରଞ୍ଜନ, ବିଗତ ଭବାପନ୍ନ,
ଶରଣ ସୁରକ୍ଷଣ ସୁରମଣ୍ଡନ ହେ ॥ ୧ ॥

କ୍ଷୀଣକଟିମଧ୍ୟା ନାଗରୀ ନାଗରବର ହେ
କ୍ଷମାକର ବା ନକର ମୁଁ ତବ କିଙ୍କର ହେ

Digitized by srujanika@gmail.com

ଖୋଜେ ମୁଁ ନିରନ୍ତର, ଶାନ୍ତିମୟ ସୁନ୍ଦର
ତବ ପଦ୍ମର ତଳ ଧୂଳିକଣା ମାତର
ଦୟାସାଗର ବର, କୃପା ଥରେ ବିତର
ଏ ସଂସାର ଜଞ୍ଜାଳ ଘୁଞ୍ଚୁ ମୋହର ହେ ॥ ୨ ॥

ଖ୍ୟାତ କରିବ ନାମ ସଂକୀର୍ତ୍ତନ ଗାୟନେ ହେ
ଖଟିବ ସୁଯତନେ ରମାକାନ୍ତ ଚରଣେ ହେ
ଅନୁରୂପ ସାଧନେ, ନାହିଁକି କେହି ଜଣେ
ଭଜି ଥରେ ନିର୍ବାଣେ, ଦମ୍ଭ ବାନ୍ଧିଛି ମନେ
ଦୟାଳୁ ତ ଆପଣେ, ମୋକ୍ଷବାରି ବର୍ଷଣେ
ନିଅ ବନ୍ଦ୍ୟ ଭୁବନେ, ନର ଜୀବନେ ହେ ॥ ୩ ॥

କ୍ଷିପ୍ର ହିଅ ମୋହର, ଆରାଧ୍ୟ ଦେବବର ହେ
ଜାଣେ ନାହିଁ ତୁମ୍ଭ ମାୟା ତୁମ୍ଭଙ୍କୁ ଗୋଚର ହେ
ବ୍ୟଥା ବିଧୂର କର, ପ୍ରେମଲୀଳା ତୁମ୍ଭର
ରଚିଲି ଯା ସାଗର-ସୁତା ଜୀବ-ଈଶ୍ୱର
ଥିଲେ ଦୋଷ ମାତର କ୍ଷମିବ ବଂଶୀଧର
ଯୋଡ଼ିଛି ବେନିକର ରାମ ଆଗର ହେ ॥ ୪ ॥

---

**ସମାପ୍ତ**

---

ବ୍ରହ୍ମପୁର ଓଡ଼ିଶା ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସରେ ଶ୍ରୀ ହାଡ଼ି ସାହୁ ଗୁରୁଙ୍କ
ଦ୍ୱାରା ମୁଦ୍ରିତ । ୧୯୫୧ ।

Digitized by srujanika@gmail.com